# ସୂଚୀପତ୍ର


| | | |
|---|---|---|
| ୧. | ରଣରଙ୍ଗର ନାୟକ | ୧ |
| ୨. | କଥାକାରଙ୍କ କଥା | ୨୨ |
| ୩. | ଦୁଇ ହିଣ ଧଳା କଗସିନ ... | ୩୫ |
| ୪. | କଳା ତୁଳସୀର ଜଟ | ୪୩ |
| ୫. | ଘୋଷଣା | ୫୮ |
| ୬. | ଗୀତା ଓ ଗ୍ଳନା | ୬୨ |
| ୭. | ବ୍ୟତିକ୍ରମ | ୭୬ |
| ୮. | ପରିତାପ | ୮୨ |
| ୯. | ସଭ୍ୟତାର ଷଡ଼ଯନ୍ତ୍ର | ୯୮ |
| ୧୦. | ପାହାଡ ପାହାଡ | |
| ୧୧. | ସନ୍ଦେଶ | |
| ୧୨. | କୂଳ | |
| ୧୩. | ପ୍ରିୟା ମନ୍ତୁଡ଼ | |
| ୧୪. | ଦସ୍ୱିମଞ୍ଜା | |

ଭାରତୀୟ ସେନାବାହିନୀରୁ ଡାକରା ଆସିଛି ।

ସଂଗ୍ରାମ ସାନ୍ତର ଚିନ୍ତାମଗ୍ନ ହେଲା । ଆଜ ଜନ୍ମମାଟିର ଆହ୍ୱାନରେ ପବିତ୍ର ଭାରତ ଭୂମିର କୋଣେ କୋଣେ ବିପୁଳ ଉତ୍ସାହର ଜୁଆର ମାଡି ଉଠିଛି । ଘରେ ଘରେ ଯୁବଶକ୍ତି ସିଂହବିକ୍ରମରେ ଜାଗ୍ରତ ହୋଇ ଉଠିଛନ୍ତି ।

ବହୁ ବୀର ଜବାନ ଚିର ପ୍ରଶାନ୍ତ ଭାରତ ମାଟିର ପ୍ରତି ପହଁଣ୍ଡ ସ୍ଥାନରୁ ହୀନ, ଘୃଣ୍ୟ ଚୀନର କମ୍ୟୁନିଷ୍ଟ ଆକ୍ରମଣକାରୀ ଦସ୍ୟୁମାନଙ୍କୁ ହଟାଇ ଦେବାଲାଗି ସମ୍ମୁଖ ରଣକ୍ଷେତ୍ରକୁ ଛୁଟି ଚାଲିଛନ୍ତି । ଆହୁରି ଆହୁରି ଅନେକ ଶୀଘ୍ର ଯିବା ନିମନ୍ତେ ନିଷ୍ପତ୍ତି କରି ପ୍ରସ୍ତୁତ ହେଉଛନ୍ତି । ସେ ଅବା ନ ଯିବ କାହିଁକି ? ବୀରଭୂମି ଉତ୍କଳର ଗୌରବମୟୀ କୋଳରେ ଜନ୍ମହୋଇ ପାପାଗ୍ରସ୍ତ ଚୀନାମାନଙ୍କ ଦୁର୍ଗୁଣ ବାହୁନି ବାହୁନି ଘରେ ବସି ରହିଥିବ ? ରହି ପାରିବ ?

ତାର ରକ୍ତ ତାତି ଉଠିଲା ।

ଟିକିଏ ଏପାଖ ସେପାଖକୁ ଚାହିଁ ଉଚ୍ଚ ଗଳାରେ ଡାକିଲା—ରାଗିଣୀ! କପେ ଚା ଆଣ ତ—ଦୁଧ ଅଛି ?

ରୂପସୀ ପତ୍ନୀର ସୁନ୍ଦର ମୁହଁକୁ ସେ ଲେଉଟି ଲେଉଟି ଚାହିଁଲା ।

ରାଗିଣୀ ଷ୍ଟୋଭେଇଘର ବାରଣ୍ଡାରେ ନୂଆରେ କିଣି ଆଣିଥିବା କୁମାରୀ କନ୍ୟାଟିକୁ ପାଚିଲା କଦଳୀ ଖୁଆଉ ଖୁଆଉ ଉତ୍ତର ଦେଲା—ଅଛି, ଆଣୁଛି! ଦୋ ମିନଟ୍ ପ୍ଲିଜ୍...

ସଂଗ୍ରାମ ମନେ ମନେ ହସିଲା । ରାଗିଣୀ ଏକାନ୍ତରେ ଥିଲାବେଳେ ଏମିତି ଓଡ଼ିଆ, ହିନ୍ଦୀ, ଇଂରେଜୀ—ସବୁ ଭାଷାରେ ମିଶାମିଶି କଥା କହେ । ଏହାହିଁ ତା ଗୃହିଣୀ ଜୀବନରେ ଖୁସି ମନର ଅଭ୍ରାନ୍ତ ପରିଚୟ । ଘର କୋଣରେ ଜାତୀୟ ସଂହତି-ମନ୍ତ୍ରର ଉଦାର ଆବୃତ୍ତି ! ଆଜି କାଲିର କଲେଜ ପଢୁଆ ଝିଅଟିକନା—ବେଟ୍ ହୁସିଆର, ବେଶ୍ ଭାବ ପ୍ରବଣ !

ସେ ଲେଉଟିଲା, ତାଆଁଣିଆ ଦୃଷ୍ଟି ନିକ୍ଷେପ କଲା ରାଗିଣୀ ଉପରକୁ ।

ରାଗିଣୀ ଚାଲିଗଲା ।

ସଂଗ୍ରାମ ଅନେକ ଦିନ ହେଲାଣି ସେନାବାହିନୀରୁ ଇସ୍ତଫା ଦେଇ ଚାଲି ଆସିଥିଲା । ସମର ବିଦ୍ୟା ସେ ଶିଖିଛି । ଯୁଦ୍ଧକଥା ପଢ଼ିଲେ ତାର ଦେହ ହାତ ଢୋଳା ହେଉଛି । ମନ ପ୍ରାଣ ମାତି ଉଠୁଛି ।

ଚା କପ୍‌ଟା ବଢ଼େଇ ନେଉ ନେଉ ସଂଗ୍ରାମ ପଚାରିଲା, ସୀମାନ୍ତ ଯୁଦ୍ଧର ଖବର ରଖୁଛ ତ ?

"ସେଥିପାଇଁ ତ ବେଳେବେଳେ ବଡ଼ ଅସ୍ଥିର ଲାଗୁଛି । ଚୀନ ଦେଶର ପାପକୁମ୍ଭ ପୂର୍ଣ୍ଣ ହୋଇଗଲାଣି ବୋଧହୁଏ । ତେଣୁ ବେଳକୁ ବେଳ ସେମାନେ ଏ ପ୍ରଳୟର ବହ୍ନି ଜାଳୁଛନ୍ତି !"



ରଣସଙ୍କର ନାୟକ

କହୁ କହୁ ଗଗିଣୀ କାନ୍ଥକୁ ଆଉଜ ବସି ପଡ଼ିଲା ।

"ପରଣତ୍ତ ସମ୍ପର୍କରେ କଣ ଭାବୁଛ ?"

"ଭାବୁଛି, ବହୁ ପତନ ଉତ୍‌ଥାନ ପରେ ଏଥର ମଣିଷ ସମାଜ ପୂର୍ଣ୍ଣ ଶାନ୍ତିର ନକଟତମ ପୀଠ ଆଡ଼କୁ ସିଧାସଳଖ ମୁହାଁଇଛି ।"

"କେମିତ ?"

"ମାଓତ୍ସେ ତୁଂଙ୍ଗ୍ କମ୍ୟୁନଷ୍ଟ ଚୀନର ଏ ଆକ୍ରମଣ କେତେ ଲକ୍ଷ କ କେତେ କୋଟି ଲୋକଙ୍କର—ଆଉ କେତେ କୋଟି ଲୋକଙ୍କ ଉପରେ ପରାକ୍ରମଶାଳୀ ଆକ୍ରମଣ ନୁହେଁ କ ଗୋଟାଏ ଦେଶ ମଧ୍ୟରେ ଆଉ ଗୋଟାଏ ରାଜ୍ୟର ଏହା ରାଜନୈତକ ଶାସନ ପ୍ରସାର ଉଦ୍ୟମ ନୁହେଁ । ଭାରତ ଉପରେ ଚୀନର ଏ ଆକ୍ରମଣ—ସୁଶାନ୍ତ ସୁନ୍ଦର ଦଗନ୍ତ ବକ୍ଷରେ ଉତକ୍ଷିପ୍ତ ଝଡର ଏକ ଚରମ ବତ୍ୟାତ ପରି ! ଏ ଝଡ଼, ଏ ବତାସ ସର୍ବଦା ଅବାଞ୍ଛନୀୟ, ଅସ୍ଥିର, ସର୍ବନାଶ ଭୟଙ୍କର, ଅମଙ୍ଗଳକର, ଅନଶ୍ଚିତ ଓ ଅଚିର ! ଏ ଝଡ଼ ଲଭିଯିବ । କନ୍ତୁ—"

"କନ୍ତୁ ପୁଣି କଣ ?"

"ଏ ବତ୍ୟାତକୁ ତୁରନ୍ତ ଏଡ଼ଦେବା ଲାଗି ସଂପୃକ୍ତ ଦେଶର ପ୍ରତ୍ୟେକ ଶକ୍ତିବାନ ଲୋକଙ୍କର ଆତ୍ମପ୍ରସ୍ତୁତ କରବା ଦରକାର । ଭାରତର ଯେଉଁ ବୀର ଯୁବକମାନେ ଏ ଆକ୍ରମଣ ପ୍ରତହତ କରବା ଲାଗି ଆଗୁସାର ହେଉଛନ୍ତି—ସେମାନଙ୍କ ଉପରେ ଭଗବାନଙ୍କର କରୁଣା ଅସୀମ !"

"ରଣକ୍ଷେତ୍ରରେ ମୃତ୍ୟୁବରଣ କରବା ଭଗବାନଙ୍କର କରୁଣା ?"

ବିଜ୍ଞାନରେ ଏମ୍. ଏ. ପାଶ କରଥିବା ଗୃହଣୀ ରାଗିଣୀ ସଂଗ୍ରାମର ଏ କଥା ଶୁଣି ହସିଲା । ଟିକଏ ପରେ ସେ ଧୀର ଗମ୍ଭୀର

ଗଳାରେ କହିଲା, "ଭୁଲ୍ ବୁଝିଛନ୍ତି! ଗୀତା ପଢ଼ିଛନ୍ତି ପରା ? ରଣକ୍ଷେତ୍ରରେ ଯେଉଁମାନେ ମରିଛନ୍ତି ବା ମରିବେ, ସେମାନେ ଆଗରୁ ମରି ସାରିଥିଲେ ବା ମରି ସାରିଛନ୍ତି । ଜନ୍ମ ମରଣ କାହାରି ହାତର କଥାନୁହେଁ । ଏହା ସ୍ରଷ୍ଟାଙ୍କର ଇଚ୍ଛାଧୀନ । କିଜକୁ ଆଉ ସବୁରୁ ଲୁଚେଇ ହେବ; କିନ୍ତୁ ମୃତ୍ୟୁଠାରୁ ନୁହେଁ । ଏ ଅତି ସାଧାରଣ କଥା । ଆଜ ଯେଉଁମାନେ ରଣକ୍ଷେତ୍ରରେ ମରିଛନ୍ତି, ସେମାନେ ଯୁଦ୍ଧକୁ ଯାଇ ନ ଥିଲେ ହୁଏତ ସିନେମା ଦେଖିବାକୁ ଯାଉ ଯାଉ ଦୁର୍ଘଟଣାରେ ପଡ଼ି ମରିଥାନ୍ତେ; ଘର ଭିତରେ ଭାଇ, ଭାଇ ସାଙ୍ଗରେ କଳିଆ କରି ବାଡ଼ିଆ ବାଡ଼େଇ ହେଉ ହେଉ ମୁଣ୍ଡ ଫାଟିଥାନ୍ତା । ମରଣ ସହିତ ଯୁଦ୍ଧର କୌଣସି ସମ୍ପର୍କ ନାହିଁ ।"

ସଂଗ୍ରାମ ଚକିତ ହେଲା । ଆଗ୍ରହଶୀଳ କଣ୍ଠରେ ପଚାରିଲା, ଆଉ ?

ଏଥର ଅପେକ୍ଷାକୃତ ଅଧିକ ଗମ୍ଭୀର ହୋଇ ରାଗିଣୀ କହିଲା, ଭଗବାନ ତାଙ୍କର ପ୍ରିୟ ମଣିଷ ସମାଜରେ ନୀଚ ପ୍ରବୃତ୍ତିଗୁଡ଼ିକର ଉତ୍ପାତ ଯେତେବେଳେ ଗର୍ହିତ ମନେ କରନ୍ତି, ସେତେବେଳେ ସେହି ଉଦ୍ଧତ ନୀଚ ପ୍ରବୃତ୍ତିଗୁଡ଼ିକର ଉଦ୍ଭ୍ରାନ୍ତ ସ୍ରୋତ ସହିତ ସୁଶାନ୍ତ ଉଚ୍ଚ ପ୍ରବୃତ୍ତିଚୟର ଅଦମନୀୟ ପ୍ରବାହକୁ ସାମନା କରାନ୍ତି । ପ୍ରବୃତ୍ତିଗୁଡ଼ିକ ସର୍ବଦା ମଣିଷର ପଞ୍ଚେନ୍ଦ୍ରିୟକୁ ଆଶ୍ରୟ କରି କ୍ରିୟା କରୁଥାନ୍ତି, ତେଣୁ ମଣିଷ ବିରୁଦ୍ଧରେ ମଣିଷକୁ ହିଁ ଅସ୍ତ୍ର ଉଠାଇବାକୁ ପଡ଼େ । ଏଥିରେ ମଣିଷ ମାରେ ନାହିଁ କି ମରେ ନାହିଁ । ମଣିଷ ହାରେ ନାହିଁ କି ଜିଣେ ନାହିଁ । ମରେ କିଛି ପ୍ରବୃତ୍ତିଗୁଡ଼ିକର ଆସ୍ଫାଳନ, କିପାତ ହୁଏ ସେମାନଙ୍କ କ୍ରିୟା ଶକ୍ତିର ବାହକ! ପରାଜିତ ହୁଏ ଅନାଚାର, ଅନ୍ୟାୟ, ଅନୀତିର ଦୁର୍ଜ୍ଜେୟ ପ୍ରଭାବ, ପ୍ରତିପତ୍ତି । ମାନବିକତାର ବିଜୟ ହୁଏ । ଏହା ସୃଷ୍ଟିର ସ୍ୱଭାବ ସୁଲଭ ପରମ୍ପରା ।

ଖାଲି ମୃଦୁ କମ୍ପନ୍ଥି ଥୋଇ ଦେଉ ଦେଉ ସଂଗ୍ରାମ ଏକ ଆକସ୍ମିକ ଅଭେଦ୍ୟତାପ୍ରାପ୍ତ ଆନନ୍ଦରେ ଉନ୍ମତ୍ତପ୍ରାୟ ହୋଇ କହିଲା, ଭଗିଣୀ! ଏ କଣ କହୁଛ ତମେ ? ତମେ ତପସିଦ୍ଧା ତପସ୍ୱିନୀ ନା ଜଣେ ସାଧାରଣ ଗୃହିଣୀ ମାତ୍ର ?

ଭଗିଣୀ ଆହୁରି ଉତ୍ସାହିତ ହୋଇ କହିବାକୁ ଲାଗିଲା, ନ ହେଲେ କ୍ୟୁବାରେ ଉପୁଜିଥିବା ଆସନ୍ନ ବିଶ୍ୱ-ସଙ୍କଟ ଦୂରକୁ ଘୁଞ୍ଚିଯାଇ ଭାରତ ସୀମାରେ ଏ ମହାସମରବହ୍ନି ଜଳି ଉଠନ୍ତା କାହିଁକି ? ପୃଥିବୀର ଦୁଇଟି ପରସ୍ପର ବିରୋଧୀ ବୃହତ୍ ଶକ୍ତି ଆମେରିକା ଆଉ ରୁଷିଆ ଭିତରେ ସୁସମ୍ପର୍କ ସ୍ଥାପିତ ହୋଇ ଆସିଲା ବେଳକୁ ଆପଣା ମା ପେଟର ଭାଇ ପାକିସ୍ଥାନ ଭାରତର ଶତ୍ରୁ ରୂପେ ଠିଆ ହୁଅନ୍ତା କାହିଁକି ? ପୃଥିବୀରେ ଭାରତ ହିଁ ସତ୍ୟ, ନ୍ୟାୟସମ୍ମତ ମାନବିକତାରେ ଯଥାର୍ଥଭାବେ ଅନୁପ୍ରାଣିତ ଏକ ମହାନ୍ ଦେଶ ! ଏ ଦେଶ ହିଁ ପୃଥିବୀର ପୁଞ୍ଜିଭୂତ ଆସୁରିକ ଶକ୍ତିର ସାମନା କରିବା ଲାଗି ଉପଯୁକ୍ତ ଓ ସକ୍ଷମ । କାରଣ ପୃଥିବୀରେ ଶାନ୍ତି ତଥା ଧର୍ମସ୍ଥାପନ ପାଇଁ ଯୁଗେ ଯୁଗେ ଭଗବାନ ଭାରତ ଦେଶକୁ ହିଁ କର୍ମକ୍ଷେତ୍ରରୂପେ ବାଛି ଥାଆନ୍ତି ।

ସନ୍ଦେହପୂର୍ଣ୍ଣ ଦୃଷ୍ଟି ନିକ୍ଷେପ କରି ସଂଗ୍ରାମ ପଚାରିଲା, ତା ହେଲେ ମୁଁ ମଧ୍ୟ ସମ୍ମୁଖ ରଣକ୍ଷେତ୍ରକୁ ଯିବି ?

ଏଥର ଭଗିଣୀ ତରୁଣ ସ୍ୱାମୀର ସବଳ ହାତ ଦୁଇଟିକୁ ଧରିପକାଇ ବିହ୍ୱଳିତ କଣ୍ଠରେ କହିଲା, ସେ ସୌଭାଗ୍ୟ ଭଗବାନ ମୋତେ ଦିଅନ୍ତୁ··· ବର୍ତ୍ତମାନ ବୁଝୁଛି, ସତକୁ ସତ ମୁଁ ବଡ଼ ଭାଗ୍ୟବତୀ । ପ୍ରଭୁ ମୋର ସ୍ୱାମୀଙ୍କୁ ତାଙ୍କର ପବିତ୍ର ଇଚ୍ଛା ପୂରଣ ନିମିତ୍ତ ଅନ୍ୟତମ ଉପଯୁକ୍ତ ମାଧ୍ୟମରୂପେ ସ୍ୱୀକାର କରିଛନ୍ତି । ଆଃ—

ରଙ୍ଗିଣୀର ସର୍ବାଙ୍ଗ ଶିହରି ଉଠିଲା । ଆନନ୍ଦରେ, ଉତ୍ସାହରେ ତାର ରକ୍ତିମ ଗଣ୍ଡଦେଶ ଆହୁରି ଫଗୁଲ ହୋଇଗଲା । ସେ କହିଲା, ବିଂଶ ଶତାବ୍ଦୀର ମଧ୍ୟଭାଗ ଅତିକ୍ରମ କରିସାରି ତଥାକଥିତ ମାମୁଲି ଧର୍ମ ବିଶ୍ୱାସରେ ଅନ୍ଧହୋଇ ମୁଁ ଆଜ କୌଣସି ଭୁଲ୍ କରିବାକୁ ପ୍ରସ୍ତୁତ ନୁହେଁ । ମୁଁ କହୁନାହିଁ, ରଣକ୍ଷେତ୍ରରେ ମୃତ୍ୟୁଲାଭ କଲେ ଆତ୍ମା ସ୍ୱର୍ଗକୁ ଯିବ । କିନ୍ତୁ ମୁଁ ବଡ଼ ଆନନ୍ଦିତ ଯେ ମୋ ସ୍ୱାମୀଙ୍କ ଶରୀର ଓ ଜୀବନକୁ ଭଗବାନ ତାଙ୍କ ବିଶ୍ୱକଲ୍ୟାଣକର ଦିବ୍ୟ ଉଦ୍ଦେଶ୍ୟ ସାଧନ ନିମିତ୍ତ ସୁଯୋଗ୍ୟ ବୋଲି ସ୍ୱୀକାର କରିଛନ୍ତି— ସକ୍ଷମ ବୋଲି ଗ୍ରହଣ କରିଛନ୍ତି । ଏ ଯୋଗ୍ୟତା ଖାଲି କଥାର କଥା ନୁହେଁ ।

"ଆପଣ କଣ ମନେ କରନ୍ତି, ଯେ ଇଚ୍ଛା କରିବ, ସେ ଯୁଦ୍ଧକୁ ଯାଇପାରିବ ? ଏ ଧାରଣା ନିର୍ବୋଧର ଧାରଣା । ଭଗବାନଙ୍କ କରୁଣା ନ ହେଲେ ରଣକ୍ଷେତ୍ର ପ୍ରାପ୍ତ ହୋଇପାରେ ନା । ଏ ଯୋଗ୍ୟତା ଲାଭ କରିବାକୁ ଜନମ ଜନମ ଧରି କଠୋର ସାଧନା, ତପସ୍ୟା ଓ ଯୋଗ କରିବାକୁ ହୋଇଥାଏ । ଭଗବାନ କରନ୍ତୁ ତୁମର ପୁଣ୍ୟଇଚ୍ଛା ପରିପୂର୍ଣ୍ଣ ହେଉ । ତୁମର ପୁଣ୍ୟରୁ ମୋତେ ମଧ୍ୟ ସେହିପରି ମହାସେବାର ସୁଯୋଗ ମିଳୁ । ରଣକ୍ଷେତ୍ରରେ ଆହତ ବୀରମାନଙ୍କ ସେବା କରିବା ଲାଗି ଭଗବାନ ମୋତେ ଗ୍ରହଣ କରନ୍ତୁ ।"

ରଙ୍ଗିଣୀର ଦୁଇ ଆଖିରୁ ଆନନ୍ଦାଶ୍ରୁ ଧାର ଧାର ହୋଇ ଝରିବାକୁ ଲାଗିଲା ।

ସଂଗ୍ରାମ ଆଉ ସମ୍ଭାଳି ପାରିଲା ନାହିଁ । ରଙ୍ଗିଣୀର ଦୁଇ କୋମଳ କାନ୍ଧରେ ଆପଣାର ବଜ୍ରଦୃଢ଼ ବାହୁ ଦୁଇଟିକୁ ଲମ୍ବିଦେଇ କହିଲା, ରଙ୍ଗିଣୀ ତମେ କଣ ପାଗଳ ହୋଇଗଲ ? ଅସୁସ୍ଥ ବୋଧ କରୁଛ ?

ତାର ଦୁଇଟିଯାକ ଆଖିରୁ ପରିତୃପ୍ତିର ପ୍ରଦୀପ୍ତ ଜ୍ୟୋତି ବିକୀରଣ ହେବାକୁ ଲାଗିଲା । ମିଠ ମିଠ କରି ସଂଗ୍ରାମର ମୁହଁକୁ ଅନାଇ ଅନାଇ ରାଗିଣୀ କହିଲା, କାଇଁ, ନାଇ ତ ! କିନ୍ତୁ—

"ପୁଣି କଣ କିନ୍ତୁ···?"

"ଭାରତବର୍ଷର କେତେ ଗାଁରେ କେତେ ଯୁବକ ନାହାନ୍ତି ? ହେଲେ ତମର ଓ ତମଭଳି ଯୁବକମାନଙ୍କର ମନରେ ହିଁ ସର୍ବପ୍ରଥମେ କାହିଁକି ଏ ଇଚ୍ଛା ଜାଗ୍ରତ ହେଉଛି ଜାଣ ?"

ରାଗିଣୀର କପାଳ ଉପରୁ ବିକ୍ଷିପ୍ତ ଚୂର୍ଣ୍ଣ କୁନ୍ତଳଗୁଡ଼ିକ ଆଡ଼େଇ ଦେଉ ଦେଉ ସଂଗ୍ରାମ ଗେଲେଇ ହୋଇ ପଚାରିଲା, କଣ ?

କଥା ଢୋକି ରାଗିଣୀ ଗଭୀର ସବିଗରେ ଉତ୍ତର ଦେଲା— ତମେ ଭାରି ଭଲ ମଣିଷ । ଭଗବାନ ତମକୁ ଭାରି ଭଲ ପାଆନ୍ତି । ତେଣୁ—

"ରାଗିଣୀ !"

"ହିଁ, ହିଁ । ତମେ ବିଶ୍ୱାସ କର । ଆଜି ପୁଣି ଥରେ ତମର ଚରଣ ତଳେ ଏଇ ଅଗଣାର ମାଟି ଧୂଳିରେ ନିଜକୁ ସଂପୂର୍ଣ୍ଣ ଭାବରେ ଅଜାଡ଼ି ଦେବାକୁ ଇଚ୍ଛା ହେଉଛି । ମୁଁ ତମକୁ ବିବାହ କରିଛି, ମୁଁ ତୁମର ପତ୍ନୀ ହୋଇ ପାରିଛି—ଏ ଜନମ, ଏ ଜୀବନ ସ୍ୱୟଂ ସଫଳ ହୋଇଯାଇଛି ! ଆଃ ଦୁଧ ସର ପରି କି ସୁଆଦ ଏ ସୌଭାଗ୍ୟ···"

"ରାଗିଣୀ !"

"ତମେ କିଛି ବୁଝି ପାରିବ ନାହିଁ ଆଜି ! ସାର୍ଥକଜନ୍ମା ଯୁଗସ୍ରଷ୍ଟା ବୀର ପୁରୁଷ ସିଂହର ପତ୍ନୀ ମୁଁ—

ମୋ ମନରେ ଆଜି ଯେ କି ମହତ୍ତର ଗର୍ବ ଓ ଗୌରବର ବନ୍ୟା ଛୁଟିଛି, ତମେ ସ୍ୱାମୀ ହୋଇ ଅନୁମାନ କରି ପାରିବ ନାହିଁ । ପୁରୁଷର ମନ କେଇ କଳନା କରି ପାରିବ ନାହିଁ ନାରୀ ମନର ଏ ଉଲ୍ଲାସ । ତୁମେ ପ୍ରସ୍ତୁତ ହୁଅ ! ତୁମ କପାଳରେ ବରେଣ୍ୟ ବିଜୟ ଟୀକା ପିନ୍ଧାଇ ଦେଇ ମୁଁ ପରମ ତୃପ୍ତି ଲାଭ କରିବ ।”

ସଂଗ୍ରାମ ନିଜକୁ ଆଉ ଆକଟି ପାରିଲା ନାହିଁ । ସଙ୍ଗିଣୀର ମୁଗ୍ଧ ବିହ୍ୱଳ ଦେହକୁ ନିବିଡ଼ ଭାବରେ ନିଜ ଆଡ଼କୁ ଆଉଜାଇ ଆଣି ଗାରବକ୍ଷମରେ କହିଲା, “ତୁମେ ଚିର ଯଶସ୍ୱିନୀ ହୁଅ ସଙ୍ଗିଣୀ ! ଭଗବାନଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ମୋ ଦେଶ, ମୋ ଜାତିର ବିଜୟରେ ମାନବ ଜାତିର ଜୟ ହେଉ ! ସଙ୍ଗିଣୀ, ମୁଁ ଆଜି ନିଃସନ୍ଦେହ । ଚିର କଲ୍ୟାଣମୟୀ ମହାମାୟୀ ମହାଶକ୍ତିର ପୂର୍ଣ୍ଣ ପ୍ରତୀକ ନାରୀ ମନରୁ ଆଜି ଅମୃତ ଝରୁଛି । ତମ ନିକଟରେ ମୁଁ ଆଜି ଚିର କୃତଜ୍ଞ ସଙ୍ଗିଣୀ, ଚିର କୃତଜ୍ଞ !”

ଆଉ କାଳ ବିଳମ୍ବ ନ କରି ସଂଗ୍ରାମ ସମର-ଯାତ୍ରା ପାଇଁ ପ୍ରସ୍ତୁତ ହେଲା ।

**ସଂ**ଗ୍ରାମ ରଣକ୍ଷେତ୍ରକୁ ଯାଇ ଦୁଇ ସପ୍ତାହ ବିତିଗଲାଣି । ଏ ଭିତରେ ରାଗିଣୀ ଖଣ୍ଡିଏ ମାତ୍ର ଚିଠି ପାଇଛି । ସେଥିରେ ସଂଗ୍ରାମ ଜଣାଇଛି ଯେ, ସାମରିକ କର୍ତ୍ତୃପକ୍ଷ ତା ପ୍ରତି ପ୍ରସନ୍ନ ହୋଇ ତାକୁ ଦୁଇ ଦିନ ଭିତରେ ଆଗୁଆ ଘାଟିକୁ ପଠାଉଛନ୍ତି । ଖୁବ୍ ସମ୍ଭବତଃ ସେ 'ଲଦାଖ' ଅଞ୍ଚଳର 'ଚୁସୂଲ୍' ନିକଟବର୍ତ୍ତୀ କୌଣସି ଗୁରୁତ୍ୱପୂର୍ଣ୍ଣ ଘାଟିକୁ ପ୍ରେରିତ ହେବ ।

ସେ ଚିଠି ପଢ଼ିଲାବେଳେ ରାଗିଣୀ ବୋଧ କରିଛି, ସତେ ଯେପରି କେମିତି ଗୋଟାଏ ଅଜଣା ବ୍ୟାକୁଳତା ତାର ଛାତି ଭିତରେ ପଶି ପଶି ଯାଉଛି । କିନ୍ତୁ ମା ଓ ମାତୃଭୂମି, ସ୍ୱାମୀ ଓ ମାନବ ସମାଜ ମଧ୍ୟରେ ସେ ଆଉ କୌଣସି ପାର୍ଥକ୍ୟ ଦେଖିପାରୁ ନାହିଁ । ସଂଗ୍ରାମର ବିଜୟ ଯେ ସାରା ଭାରତ ଦେଶର ବିଜୟ ଏବଂ ଭାରତର ବିଜୟ ଯେ ସମଗ୍ର ମାନବ ସମାଜର ବିଜୟ— ଏହା ଅତି ଗଭୀର ଭାବରେ ସେ ଅନୁଭବ କରି ପାରୁଛି ।

ସେଦିନ ବୁଧବାର । ରାତି ନଅଟା ବେଳକୁ ଖିଆପିଆ ସାରି ରାଗିଣୀ ତା ଶୋଇବା ଘରକୁ ଯାଇ ରେଡ଼ିଓ ଖୋଲିଲା । ଦିନର

ଶେଷ ବେତାର ସମ୍ବାଦ ଶୁଣିବା ପାଇଁ ସବୁଦିନେ ସେ ରାତି ନଅଟା ବେଳକୁ ଶୋଇବା ଘରକୁ ଚାଲିଆସେ । ରେଡ଼ିଓ ଶୁଣେ ।

ବଜ୍ର ନିର୍ଘୋଷ ସ୍ୱରରେ ବେତାର ବାର୍ତ୍ତା ପ୍ରସାରିତ ହେଲା— "ଉତ୍ତର ସୀମାନ୍ତର 'ପାଙ୍ଗଙ୍ଗ୍ ହ୍ରଦ' ଓ 'ଚୁସୂଲ' ନିକଟବର୍ତ୍ତୀ ଘାଟିଗୁଡ଼ିକରେ ଭୀଷଣ ଲଢ଼େଇ ଚାଲିଛି । ବିରାଟ ଚୀନ୍ ସେନା ବାହିନୀର ଅପ୍ରତ୍ୟାଶିତ ବ୍ୟାପକ ଆକ୍ରମଣର ସାମନା କରିବା ପାଇଁ ଆବଶ୍ୟକ ଯଥେଷ୍ଟ ପରିମାଣ ଯୋଦ୍ଧା ଓ ଯୁଦ୍ଧ ସାମଗ୍ରି ନ ଥିଲେ ମଧ୍ୟ ଦୃଢ଼ପ୍ରତିଜ୍ଞ ଭାରତୀୟ ଯବାନମାନେ ମାତୃଭୂମିର ପ୍ରତିଇଞ୍ଚ ମାଟି ରକ୍ଷା କରିବା ଲାଗି ଅଦ୍ଭୁତ ସଂଗ୍ରାମ କରୁଛନ୍ତି ।"

ରାଗିଣୀର ଗୌରବରଞ୍ଜିତ ସୁନ୍ଦର ମୁହଁରେ ସ୍ମିତହାସ୍ୟର ନାଚିଲା ତରଙ୍ଗ ଖେଳିଗଲା । ତାର ପ୍ରିୟତମ ସ୍ୱାମୀ 'ସଂଗ୍ରାମ' ଆଜି ନ୍ୟାୟ ଓ ମାନବିକତା ରକ୍ଷାଲାଗି ରଣକ୍ଷେତ୍ରରେ 'ଅଦ୍ଭୁତ ସଂଗ୍ରାମରତ' । ଜଣେ ନାରୀ ପକ୍ଷରେ ଏହାଠାରୁ ବଳି ଗର୍ବ ଓ ଗୌରବର ସମ୍ବାଦ ଆଉ କଣ ଥାଇପାରେ !

ସମ୍ବାଦ ଶେଷ ହେବାପରେ ରେଡ଼ିଓ ବନ୍ଦ କରି ସେ ଶୋଇ ପଡ଼ିଲା । ମନ ଭିତରେ ଅଜସ୍ର ଆନନ୍ଦ, ଉତ୍କଣ୍ଠା ଓ ଆକାଂକ୍ଷାର ଜୁଆର ଉଠୁଥିଲା ।

କେତେବେଳେ ନିଦ ଲାଗିଗଲା କେଜାଣି । ବୋଧହୁଏ ଅଧରାତି ବେଳକୁ ସେ ସ୍ୱପ୍ନ ଦେଖିଲା—

'ସମୁଦ୍ର ପତନ ଠାରୁ ବହୁ ହଜାର ଫୁଟ ଉଚ୍ଚରେ, ମେଘ ଭିତରେ ଯୁଦ୍ଧ ଚାଲିଛି । ଦୁର୍ଗମ ପାହାଡ଼ିଆ ଅଞ୍ଚଳ । ବିରାଟ ବରଫ ଖଣ୍ଡମାନ ଦେଖିଲେ ଦେହ ଶୀତେଇ ଉଠୁଛି । ରାସ୍ତା ଘାଟ କିଛି ନାହିଁ । କମ୍ୟୁନିଷ୍ଟ ଶାସକମାନଙ୍କ ନିଷ୍ଠୁର ନିର୍ଦ୍ଦେଶ ପାଇ ଆଧୁନିକ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ

ଚୀନ୍‌ର ପ୍ରାୟ ଗୋଟିଏ ଡିଭିଜନ ସୈନ୍ୟ ଭାରତର ଶ୍ରେଷ୍ଠ ଶ୍ରେଷ୍ଠ ଘାଟିଗୁଡ଼ିକ ଉପରେ ପ୍ରବଳ ଆକ୍ରମଣ ଚଳାଇଛନ୍ତି । ବେଳେ ବେଳେ ଭାରତୀୟ ଯବାନମାନଙ୍କ ଅଦ୍ଭୁତ ସାହସ ଦେଖି ସେମାନେ ଶଙ୍କିତ ହୋଇ ପଡୁଛନ୍ତି ସତ କିନ୍ତୁ ପଛକୁ ହଟିଯିବାର ବାଟ ନାହିଁ ।

କମ୍ୟୁନିଷ୍ଟ ଶାସକମାନଙ୍କର ସୃଷ୍ଟି ଛଡ଼ା ନିର୍ଦ୍ଦେଶ ହେଉଛି—ଯିଏ ପଛକୁ ହଟିବ ତାକୁ ଗୁଳିକରି ମାରିଦିଅ । ପଞ୍ଝୁଆ ବାହିନୀ ପ୍ରାଣ ବିକଳରେ ନିର୍ବିଗ୍ନରେ ଆଦେଶ ପାଳନ କରୁଛନ୍ତି ।

କି ବିଚିତ୍ର ଏ ଯୁଦ୍ଧ-ନୀତି ! ଅମାନୁଷିକତାର ଏହି ଚରମ ନିଦର୍ଶନ ଦେଖି ସଂଗ୍ରାମ ଭାବିଲା, ଆଉ ରକ୍ଷା ନାହିଁ । ତାଙ୍କୁ ଆଜି ଆଉ ଗୋଟିଏ ଭାରତୀୟ ଘାଟି ହରାଇବାକୁ ପଡ଼ିବ । ନଚେତ୍ କଣେହେଲେ ଭାରତୀୟ ସୈନ୍ୟ ସମ୍ବାଦ ନେବାକୁ ରହିବେ ନାହିଁ ।

ଅସଂଖ୍ୟ ମେସିନ୍‌ଗନ୍‌ର ଅବିଶ୍ରାନ୍ତ ଗୁଳି ବର୍ଷଣରେ ଆପଣା ପକ୍ଷର ସୈନିକମାନେ ଗୋଟିଏ ପରେ ଗୋଟିଏ ଢଳି ପଡ଼ୁଥିବା ଦେଖି ସଂଗ୍ରାମର ରକ୍ତ ଆହୁରି ପ୍ରଚଣ୍ଡଭାବେ ଗରମ ହୋଇ ଉଠିଲା । ସେ ସାଢ଼େ ତିନିଫୁଟ ଉଚ୍ଚର ଏକ ଓସାରିଆ ପଥର ଉହାଡ଼ରୁ ଏପରି ଲକ୍ଷ୍ୟଭେଦ କରି ଗୁଳି ବର୍ଷଣ କଲା ଯେ ଗୁହୁଁ ଗୁହୁଁ ଚୀନ୍ ପକ୍ଷର ହଜାର ହଜାର ସୈନିକ ଇତସ୍ତତଃ ହୋଇ ପଡ଼ିଲେ । ଶହ ଶହ ସୈନିକ ହତଭାଗ୍ୟ ଠେଙ୍କୁଆ ବଲୁଆ ପରି ଦୁର୍ଗମ ପାହାଡ଼ର ଖୋଲ ଖାଙ୍କର ଭିତରେ ଢଳି ପଡ଼ିଲେ ।

ବାଁ ପାଖରେ ମେଘ ପେଟରୁ ଫାଳେ ଫାଳେ ଭୁଷୁଡ଼ି ଯାଇ ଓହଳି ପଡ଼ିଥିବା ପରି ଦେଖାଯାଉଛି ଉଚ୍ଚ ଉଚ୍ଚ ପର୍ବତ ଥାକଗୁଡ଼ିକ । ଡାହାଣ ପାଖରେ ପାତାଳରୁ ବାହାରି ଆକାଶକୁ ସ୍ପର୍ଶ କରିଥିବା ପରି ଅଖଣ୍ଡ ପଥର କାନ୍ଥର ଦୀର୍ଘତା ବିସ୍ମୟ ସୃଷ୍ଟି କରୁଛି ।

ମଝି ମଝିରେ ଶୁଣି ପଡ଼ୁଥିବା ପର ପାତାଳଭେଦୀ ଗମ୍ଭୀର ନଦୀ ସ୍ରୋତ । ଏହି ଭୟଙ୍କର, ଦୁର୍ଗମ ସୀମାନ୍ତ ଘାଟି ନିକଟରେ ପାଗଳା ମଣିଷର ଅମଣିଷପଣିଆ ସୃଷ୍ଟି କରିଛି ବିଭ୍ରାଟ । ପାଗଳା କୁକୁର ପରି ଏଠାରେ ଚୀନ୍ ସୈନ୍ୟମାନେ ବାୟା ହୋଇ ଯାଇଛନ୍ତି ।

ଚୀନ୍ ସୈନିକମାନଙ୍କ ମେସିନ୍ ଗନ୍ ରୁ ଯେତେବେଳେ ପ୍ରବଳ ଝଡ଼ ସମୟର କୁଆପଥର ବୃଷ୍ଟି ଭଳି ଅଜସ୍ର ଗୁଳି ବର୍ଷଣ ହେଉଥିଲା, ସୀମାନ୍ତ ରକ୍ଷକ ଭାରତୀୟ ଯବାନମାନଙ୍କ ଆଖିରେ ପ୍ରଚଣ୍ଡ କ୍ରୋଧାନଳ ବିଶ୍ୱବିଧ୍ୱଂସୀ ବିକରାଳ ଅଗ୍ନିଶିଖା ପରି ଜଳି ଉଠୁଥିଲା । ମନେ ହେଉଥିଲା, ଏମାନଙ୍କର ଆଖିର ଏହି ନ୍ୟାୟୋଚିତ କ୍ରୋଧ ମୂର୍ତ୍ତିମନ୍ତ ହୋଇ ସତେ ଯେମିତି ଚୀନ୍ମାନଙ୍କ ସହିତ ଲଢେଇ କରୁଛି । ଦୁର୍ଦ୍ଧର୍ଷ ଚୀନ୍ ସୈନ୍ୟମାନେ ବୁଲଡ଼ଜର ଧକ୍କାରେ ଅନାୟାସରେ ଗଛ ଖୁଣ୍ଟ ଟଳି ପଡ଼ିଲା ପରି ଟଳି ପଡ଼ୁଛନ୍ତି ।

ସଂଗ୍ରାମ ଯେଉଁ ଆଙ୍ଗୁଠିରେ ତାର ପ୍ରାଣପ୍ରିୟ ମେସିନ୍ ଗନ୍ର ଟ୍ରିଗର ଟିପୁଥିଲା, ମନେ ହେଉଥିଲା ସେହି ଆଙ୍ଗୁଠି ମୂଳରେ ପୃଥିବୀର କୋଟି କୋଟି ଶାନ୍ତିକାମୀ ନର ନାରୀଙ୍କ ସଦିଚ୍ଛା ସହାନୁଭୂତି ଓ ସମର୍ଥନ 'ଅପୂର୍ବ ଶକ୍ତି'ରୂପେ ଠୁଳ ହୋଇଛି ।

ସଂଗ୍ରାମ ଉଦ୍ଦେଶ୍ୟରେ ନିକ୍ଷେପିତ ଗୁଳିଗୁଡ଼ିକ ଯେତେବେଳେ ତାର ସାମ୍ନା ପଥର କାନ୍ଥରେ ଠାଇ ଠାଇ ହୋଇ ବାଜି ଝଡ଼ି ପଡୁଥିଲା, ମନେ ହେଉଥିଲା ଭାରତ ଜନନୀର କରୁଣା ପଥର ରୂପରେ ଅବତୀର୍ଣ୍ଣ ହୋଇ ସଂଗ୍ରାମର ଦେହରକ୍ଷା କରୁଛି, ତା ମନରେ ଅସୀମ ସାହସ ଓ ଧୈର୍ଯ୍ୟ ଆଣି ଦେଉଛି ।

କ୍ରମେ କ୍ରମେ ଆହୁରି ଅସଂଖ୍ୟ ଚୀନ୍ ସୈନ୍ୟ ସେଠି ମେଣ୍ଢାପଲ ପରି ରୁଣ୍ଡ ହେବାକୁ ଲାଗିଲେ । ଅବିଶ୍ରାନ୍ତଭାବେ ଗୁଳି ଚାଲନା ଚାଲିଲା । ତଥାପି ସଂଗ୍ରାମ ଘୁଞ୍ଚିଲା ନାହିଁ । ତାର ହାତ ଦୁଇଟି ଆହୁରି ଚଞ୍ଚଳ

ହୋଇ ଉଠିଲା । ସେ ମାଡ଼ୁ ମାରିଲା ପରି, ଏହି ସୂର୍ପଣଖାର ବଂଶଧର ସ୍ୱଭାବର ଚେପଟା ନାକ ହଳଦିଆ ମେଣ୍ଢାମାନଙ୍କୁ ଗୋଟିଏ ପରେ ଗୋଟିଏ କରି ଶୁଆଇ ଦେବାରେ ଲାଗିଲା ।

ନିଜର ଏହି ସାଫଲ୍ୟମଣ୍ଡିତ ଉଦ୍ୟମରେ ସଂଗ୍ରାମ ନିଜେ ଆଶ୍ଚର୍ଯ୍ୟ ହୋଇ ପଡ଼ୁଥିଲା । ବୋଧହୁଏ ସେ ମନେ କରୁଥିଲା, ତାର ଶକ୍ତି ଯେତିକି, ସେଥିରେ ଏପରି ଅଲୌକିକ ସଫଳତା ସମ୍ଭବ ନୁହେଁ । ତାର ହାତରେ, ଆଖିରେ, ମନରେ କୌଣସି ଏକ ଅକଳନ ଅଦୃଶ୍ୟ ସାମର୍ଥ୍ୟ ପ୍ରବେଶ କରିଛି । ତାକୁ ମାଧ୍ୟମ କରି ଆଉ କୌଣସି ଅତିନ୍ଦ୍ରିୟ ଅଦୃଶ୍ୟ ଶକ୍ତି ଦୁର୍ଦ୍ଦାନ୍ତ ଚୀନ୍ ସୈନ୍ୟମାନଙ୍କୁ ଗୋଟିକ ପରେ ଗୋଟିଏ କରି ମାରି ଗଡ଼ାଇ ଦେଉଛି ।

ବେଳକୁ ବେଳ ଅପୂର୍ବ ଉତ୍ସାହରେ ତାର ବର୍ତ୍ତୁଳ ମୁଖମଣ୍ଡଳ ଉଦ୍‌ଭାସିତ ହୋଇ ଉଠୁଥିଲା । ସେ ଆହୁରି ଦ୍ୱିଗୁଣ ଉତ୍ସାହରେ ମେସିନ୍ ଗନ୍ ଚଳାଇବାକୁ ଲାଗିଲା ।

ଘାଉଡ଼ ବାଘ ପରି ଉତ୍‌କ୍ଷିପ୍ତ ଚୀନ୍‌ସେନା ତିନିଆଡ଼ୁ ଘେରିଯାଇ ଗୁଳି ଚଳାଇବା ଆରମ୍ଭ କରିଦେଲେ ।

ସଂଗ୍ରାମର ଅନୁଗାମୀ ଅନ୍ୟତମ ବୀର ଯବାନ ଅମର କହିଲା, ଏଥର ପଛକୁ ହଟି ଆ, ନିଜ ଦେହକୁ ତଳକୁ ଖସେଇ ଦେ ।

'ନା ଆମେ ସେମିତି ମରିବା ନାହିଁ । ଜୀବନ ବଦଳରେ ମାତୃଭୂମି ପ୍ରତି ଅବହେଳା କରିବା ନାହିଁ ।'

ତିନି ପାଖକୁ ଲକ୍ଷ୍ୟ ଅବ୍ୟର୍ଥ ରଖି ପୁଣି ସେ ନୂତନ ଉନ୍ମାଦନା ନେଇ ଗୁଳି ଚଳାଇବାକୁ ଲାଗିଲା ।

ମାତ୍ର ତିନି ଶହ କି ଚାରି ଶହ ଭାରତୀୟ ଯବାନ ୧୫ କି ୨୦ ହଜାର ଚୀନ୍ ସୈନିକଙ୍କ ସହ ଆଉ ଅଧିକ କାଳ ସଂଗ୍ରାମ କରି ପାରିଲେ ନାହିଁ । ଯେଉଁମାନେ ସଅଳ ଢଳି ପଡ଼ିଥିଲେ, ସେମାନଙ୍କ ମୃତ ଦେହଗୁଡ଼ିକୁ ଉଦ୍ଧାର କରିବାକୁ ବି ବେଳ ମିଳିଲା ନାହିଁ ।

ସେନା ନାୟକଙ୍କ ନିର୍ଦ୍ଦେଶରେ ଘରଙ୍ଗାସ୍ଥ ସର୍ଦ୍ଧାନମାନେ ପଛ ଘାଟିକୁ ଫେରିଯିବା ପାଇଁ ପ୍ରସ୍ତୁତ ହେଲେ ।

'ମାତୃଭୂମିର ପ୍ରତିରକ୍ଷା ବ୍ୟବସ୍ଥାକୁ ଦୃଢ଼ କରିବା ପାଇଁ ତୁମେ ପଛେଇ ଆସ ।'

କିଏ କହିଲା କେଜାଣି । ସଂଗ୍ରାମ କିନ୍ତୁ ଟଳିଲା ନାହିଁ । ସେ ପୂର୍ବପରି ପଥର ଉହାଡ଼ରେ ଆତ୍ମରକ୍ଷା କରି ଅନବରତ ଗୁଳି ବର୍ଷଣ କରିବାକୁ ଲାଗିଲା ।

ଜଣେ ପରେ ଜଣେ ହୋଇ ଆହୁରି କେତେ ଜଣ ଚୀନ୍ ସୈନ୍ୟ ଟଳି ପଡ଼ିଲେ । 'ସେମାନଙ୍କର କଳୁଷିତ ଲାଲ୍ ରକ୍ତରେ ଘରତର ମାଟି ରଞ୍ଜିତ ହେଲାବେଳେ ସଂଗ୍ରାମର ଶରୀର ରୋମାଞ୍ଚିତ ହୋଇ ଉଠୁଥିଲା ।'

ରାଗିଣୀର ଅନ୍ତର ପୁଲକିତ ହୋଇ ଉଠିଲା ।

'ସାତ ମିନିଟ୍ ପରେ ହଠାତ୍ ଗୋଟିଏ ଗୁଳି ସଂଗ୍ରାମର ବାଁ ବାହୁ କଣା କରିଦେଲା ।

ଇସ୍, ପିଚକା ମାରିଲା ପରି ପିର୍ ପିର୍ ହୋଇ ରକ୍ତ ସ୍ରୋତ ଝରିବାରେ ଲାଗିଲା ।'

ରାଗିଣୀ ଭୟଭୀତ ହୋଇ ପଡ଼ିଲା ।

'କିନ୍ତୁ ସଂଗ୍ରାମ ନିର୍ବିକାର ଭାବରେ ଗୁଳି ଚଳାଇବାରେ ଲାଗିଥିଲା । ବହୁ ଚେଷ୍ଟାସତ୍ତ୍ୱେ ଚୀନ୍ ସୈନିକମାନେ ସଂଗ୍ରାମର ପାଖ ପଶି ପାରିଲେ ନାହିଁ । ସଂଗ୍ରାମକୁ ତାର ଆଶ୍ରିତ ପଥରଟି ସବୁମତେ ରକ୍ଷା କରୁଥିଲା ।

କିନ୍ତୁ ହାୟ, ଆଉ କିଛି ସମୟ ପରେ ସଂଗ୍ରାମର ମେସିନ୍ ଗନ୍‌ରୁ ସବୁ ଗୁଳି ଶେଷ ହୋଇଗଲା । ଅମର ସିଂ କ୍ଷତ ସ୍ଥାନରେ ପଟି ଭିଡ଼ୁ ଭିଡ଼ୁ ଅତି କ୍ଷୀଣ କଣ୍ଠରେ କହିଲା, ଆଉ ନାହିଁ ।

ବିକାରଶୂନ୍ୟ ଭାଷାରେ ସଂଗ୍ରାମ ପଚାରିଲା, ଗୁଳି ନାହିଁ ?

ନାହିଁ ।

ସଂଗ୍ରାମ ଆଖି ଓ ହାତରେ ସଂକେତ ଦେଇ ସମରକୁ କେତେ କଣ ଠାରିବା ପରେ ଦେଖାଗଲା, ଆଖି ପିଛୁଡ଼ାକେ ସେମାନେ କୁଆଡ଼େ ଅଦୃଶ୍ୟ ହୋଇ ଯାଇଛନ୍ତି । ମେସିନ୍ ଗନ୍ ପଡ଼ି ରହିଛି ।

ଚୀନ୍ ସୈନ୍ୟମାନେ ଏଣେ ତେଣେ ବିକ୍ଷିପ୍ତ ଭାବରେ ଏମାନଙ୍କର ସନ୍ଧାନ ନେଉଛନ୍ତି ।

କେତେ ସମୟ ପରେ ରହି ରହି ମେଘ କୋଳରେ ଭାରତୀୟ ସେନା ବାହିନୀର ବେଗଗାମୀ ଉଡ଼ନ୍ତା ହେଲିକେପଟର୍‌ଟିଏ ଦେଖା ଯାଉଥିଲା ।

ରଙ୍ଗିଣୀର ଛାତି ଧଡ଼ ଧଡ଼ ହେଲା ।

ସେ କନୁଆ ହାତ ପ୍ରସାରି ଲମ୍ବା ଡକାଆର ଦୁଇ କୋଣକୁ ମୁଠେଇ ଧରିଲା ।

ତାର କଦ ଭାଙ୍ଗି ନ ଥିଲା ।

'ସଂଗ୍ରାମ ଦାଡୁଆ, ଗୋଡଆପଥର ବନ୍ଧୁର ପାହାଡ଼ ବକ୍ଷର ସକଳ ପ୍ରତିବନ୍ଧକକୁ ଭ୍ରୁକ୍ଷେପ ନ କରି ଅତିକ୍ରମ କରି ଗ୍ଳଲା । ଗୋଡ଼ ଖୋସି ଯାଉ ଯାଉ ମୋଟା ମଣିଷ ପରି ଠିଆ ହୋଇଥିବା ଡେଙ୍ଗା ପଥରର ହାତ ପାଦ ଧରି ନିଜକୁ ବଞ୍ଚାଇ ନେଉଥିଲା । ତାର ପାଖେ ପାଖେ ନିଜକୁ ବଞ୍ଚାଇ ବଞ୍ଚାଇ ଲହୁ ଲୁହାଣ ହୋଇ ଗ୍ଳଲଥିଲା, ଅନୁଗାମୀ ଯଓ୍ୱାନ ଅମର ସିଂ ।

ମଝି ମଝିରେ ରହି ରହିକା ସେମାନେ ଗ୍ଳରି ଆଡ଼କୁ ନିରୀକ୍ଷଣ କରୁଥିଲେ । ପୁଣି ଠରା ଠରି ହୋଇ ଅତି ତରତରରେ, ଅତି ଦୃଢ଼ତାର ସହିତ ଅଗ୍ରସର ହେବାକୁ ଲାଗିଲେ ।

ଚୀନ୍ ସୈନ୍ୟମାନଙ୍କର ସକଳ ପରିଶ୍ରମ ବ୍ୟର୍ଥ ହେଲା । ସେମାନେ ତାଙ୍କ ଅଧିକୃତ ଘାଟି ପାଖରେ ଆଉ ଜଣେ ହେଲେ ଭାରତୀୟ ଘାଟି-ରକ୍ଷକଙ୍କୁ ପାଇଲେ ନାହିଁ । ସଂଗ୍ରାମ ଭଳି ମାତ୍ର କେତେଜଣ ବୀର ଜଓ୍ୱାନଙ୍କ ଅପୂର୍ବ ସାହସିକତା ଏମାନଙ୍କୁ ଯେ କାବୁ କରି ଦେଇଛି, ସେତେବେଳେ ଏ କଥା ସେମାନେ ବୁଝି ପାରିଲେ ନାହିଁ । ବିଜୟୋନ୍ମତ୍ତ ହୋଇ ପରବର୍ତ୍ତୀ ଘାଟି ଆକ୍ରମଣ ପାଇଁ ସମସ୍ତେ ପ୍ରସ୍ତୁତ ହେବାକୁ ଲାଗିଲେ ।

ସଂଗ୍ରାମ ଓ ଅମର ସିଂ ସେଠାରୁ ଚାଲିଗଲେ ସତ ମାତ୍ର ଆତ୍ମରକ୍ଷା ପାଇଁ ସେମାନେ ସିଧା ସଳଖ ପଛ ଘାଟିକୁ ଗଲେ ନାହିଁ ।

ପଛ ଘାଟିକୁ ଯିବା ବାଟରେ ପଡ଼ୁଥିବା ଲମ୍ବା କାଠ ପୋଲ ତଳେ ଲୁଚିଯାଇ ଅନେକ ସମୟ ଧରି ରହିଗଲେ । କିଛି ସମୟ ପରେ ଦେଖାଗଲା, ଯେତେବେଳେ ଚୀନ୍ ସୈନ୍ୟମାନେ ସେମାନଙ୍କର ସମର ସରଞ୍ଜାମ ନେଇ ପୋଲ ପାର ହେବାକୁ ବସିଲେ, ସେତେବେଳେ ଏକ ଭୟଙ୍କର ବାରୁଦ ବିସ୍ଫୋରଣ ଘଟିଲା । ସମସ୍ତ କାମାଣ ପତ୍ର, ଯାନ ବାହାନ ସମେତ ବହୁ ସହସ୍ର ଚୀନ୍ ସୈନ୍ୟ ମୃତାହତ ହେଲେ । ସେହିଦିନ ସେମାନଙ୍କର ଅନ୍ୟ ଘାଟି ଆକ୍ରମଣ ଅସମ୍ଭବ ହୋଇ ପଡ଼ିଲା ।

'ଏ ଘଟଣାର ତିନି ଘଣ୍ଟା ପରେ ଆହତ ସଂଗ୍ରାମ ଓ ଅମର ସିଂ ଭାରତୀୟ ଆକାଶ ବାହିନୀର ହେଲିକପ୍ଟରର ସାହାଯ୍ୟରେ ପଛ ଘାଟିରେ ପହଁଚି ଗଲେ ଓ ସଙ୍ଗେ ସଙ୍ଗେ ସେମାନଙ୍କର ଚିକିତ୍ସା ବ୍ୟବସ୍ଥା କରାଗଲା ।'

ରାଗିଣୀ ନିଶ୍ଚିନ୍ତରେ ଶୋଇ ରହିଲା ।

ରାଗିଣୀ ଭଳି ଜଣେ ଅଳପ ବୟସର ଗେହ୍ଲା ଘରଣୀ, ପ୍ରାଣପ୍ରିୟ ପତି ସଂଗ୍ରାମର 'ସମର ଯାତ୍ରା' ପରେ ଯେ ଏତେ ଖୁସିରେ ଆତଯାତ ହୋଇ ରହିପାରେ, ଏହା ସାହି ପଡ଼ଶାର କେହିହେଲେ ଆଗରୁ ଅନୁମାନ କରି ନ ଥିଲେ । ପଡ଼ଶା ଘର ଓକିଲ ହରଶଙ୍କରଙ୍କର ସାନ ଭଉଣୀ ଅଳକା ଭାବୁଥିଲା, ରାଗିଣୀ ଏଥର ଡାକ୍ତରଖାନାରେ ଭର୍ତ୍ତିହୋଇ ସେହି ଅବହେଳିତ ଲୁହା ଖଟରେ କାଳ କାଟିବ, ତାକୁ ହିଷ୍ଟିରିଆ ରୋଗ ହେବ । ଏମିତି କେତେ ଘଟଣା ଘଟି ଥିବାର ଖବର ସେ ଶୁଣିଛି ।

ଏଇ ଜୟପୁର ସହରରୁ, କୋରାପୁଟ ପାଖ ଡମିରପୁଟ ଗାଁରୁ ଗଲା ଯୁଦ୍ଧରେ ଦି ଜଣ ଭେଣ୍ଡା ଯୁଦ୍ଧକୁ ଚାଲି ଯାଇଥିଲେ ଯେ ତାଙ୍କ ସ୍ତ୍ରୀମାନେ ଏମିତି ଉନ୍ମାଦଗ୍ରସ୍ତ ହୋଇ ପଡ଼ିଥିଲେ ବୋଲି ସେ ଦିନ ଜଣେ କମ୍ୟୁନିଷ୍ଟ ଲୋକ କହୁଥିଲା । ଆହୁରି କେତେ ଖବର ସେ ଜାଣେ, ପରେ କହିବ ବୋଲି କହି ସେଦିନ ସେ ଚାଲି ଯାଇଥିଲା । ମାତ୍ର ଏ ଭିତରେ ସରକାର ତାକୁ ଜେଲ ଭିତରେ ଠୁଙ୍କିଦେଲେ । ନ ହେଲେ ଆହୁରି କେତେ କଣ ସେ କହିଥାନ୍ତା ।

ସେ ଯାହାହେଉ ରଙ୍ଗିଣୀର ଆନନ୍ଦ ମୁଖର ହସହସ ଚଲି ବୁଲି ଦେଖି ଅଲକାର ମନରେ ସନ୍ଦେହ ଜାତ ହେଲା । ସେ ଏମ୍. ଇ. ସ୍କୁଲର ମାଷ୍ଟ୍ରାଣୀ କୁନ୍ଦନକୁ ଡାକି କହିଲା, ଶୁଣୁଛୁ ! ଆହାପର ଡେଣ୍ଡା ଘଇତାଟା ହାଣମୁହିଁକୁ ଯିବାର ଦିନ କେଇଟା ଯାଇନାହିଁ, କେମିତି ପଖି ପରି ଉଏ ସଜେଇ ହୋଇ ଲହରପହର ହେଉଛି ଦେଖିଲ । ଯେତେହେଲେ କୁଳର ବୋହୂ, ଭୂଆଶୁଣୀଟା ଏ । ଛି...

ଆହୁରି କେହି କେହି ଦେଖେଇ ଶିଖେଇ କହିଲେଣି ଯେ, ଆଉ କିଛି ମରମ ଥିବ ! ଏବକାଳ ଟୋକୀଙ୍କୁ ଦଇବ ପାରିବ ନାହିଁ ପରା !

ଏ ଟୁପୁଟାପ ଫୁସଫାସ କଥାଗୁଡ଼ିକ ଯୋଡ଼ିହୋଇ, ଛନ୍ଦିହୋଇ ରଙ୍ଗିଣୀର କାନରେ ପଡ଼ିଲା । କିଛିଟାଏ ପଡ଼ିଥିଲେ ବି ଡ଼ିଙ୍କିଟାଏ ପଡ଼ିବା ପରି ଶବଦ ତା କାନକୁ ଶୁଭିଲା ।

ରଙ୍ଗିଣୀର ବାପା ବୋଉଙ୍କ ଆଗରେ ବି କେହି କେହି କାନ୍ଥ ବାଡ଼କୁ ଦେଖାଇ ନାନା କଥା କହିଲେ, ଉପଲକ୍ଷ ଦେଲେ । ମା ମନ ତରଳି ଗଲା । କେତେ ଅଶଙ୍କୁନ ସପନ ତାଙ୍କ ମନକୁ ଛନ୍ନ ଛନ୍ନ କଲା । ରଙ୍ଗିଣୀର ବୋଉ ସେଦିନ ରାତିରେ ସ୍ୱାମୀଙ୍କର ଗୋଡ଼ ମୋଡ଼ି ଦେଉ ଦେଉ କହିଲେ, ଶୁଣୁଚ...ତୁମେ କାଲି ଯାଅ । ସେ ଝିଅଟା ଘର ଉଏ । ଏମିତି ଅବଲ ଦବଲ ବୋଲି ସେ ସହିପାରିବ ନାହିଁ । ନାକ ଠିଆକରି କଣ ନାଇଁ କଣ କରି ବସିବ । ତାକୁ ଘେନ ଆସ । ସେ ଏଇଠି ରହୁ ।

ବାପା ଆସି ଅନେକ ବୁଝାଇଲେ । କହିଲେ, ଯେତେହେଲେ ମାଇକନା ଝିଅ । ଏକୁଟିଆଟା ଦାଣ୍ଡବାଟରେ ଚଲାବୁଲା କରିବା ଭଲ ନୁହେଁ । ବିଶେଷ କରି ବାହାହେଲା ଝିଅ ପକ୍ଷରେ ଏ ସବୁ ଦାଣ୍ଡିକୁ ଅସୁନ୍ଦର ଦିଶେ । ଲୋକେ ନାକ ଟେକନ୍ତି ।

ରାଗିଣୀ କିନ୍ତୁ ଓଲଟି ବାପାଙ୍କୁ ବୁଝେଇ ଦେଲା ଯେ, ସେ କେବଳ ବାପାଙ୍କର ଝିଅ ନୁହେଁ, ବାପା ଯେଉଁ ଦେଶର ମାଟି ପାଣି ପବନରେ ବଢ଼ି, ତାକୁ ବଢ଼ାଇଛନ୍ତି, ସେ ଦେଶର କନ୍ୟା ସେ। ଭାରତର 'ନାରୀ! ଦେଶ ଯେତେବେଳେ ବିପଦଗ୍ରସ୍ତ, ଜାତି ଯେତେବେଳେ ବିପନ୍ନ, ସେତିକି ବେଳେ ସେ ବାପାଙ୍କୁ ଭୁଲି ଜନ୍ମଭୂମି ଭାରତ ମାତାର ସେବା କରିବାକୁ ଚାହେଁ । ସେ ଏଇଠି ରହି ଦେଶପାଇଁ, ଜାତିପାଇଁ, ସୀମାନ୍ତରେ ଲଢ଼େଇ କରୁଥିବା ଜଓ୍ୱାନମାନଙ୍କପାଇଁ ପାରିଲା କାମ କରିବ। ତସ୍କର ଶତ୍ରୁର ଜଘନ୍ୟ କବଳରୁ ଜନ୍ମଭୂମିର ପ୍ରତି ଇଞ୍ଚ ଭୂମି ମୁକ୍ତହେବା ପର୍ଯ୍ୟନ୍ତ ସେ ଦରକାର ପଡ଼ିଲେ ବାପା, ମା, ସାହି ପଡ଼ିଶା, ଶତ୍ରୁ ମିତ୍ର, ମାନ ଅପମାନ ସବୁ ଭୁଲିଯିବ।

ବାପାଙ୍କ ଅନୁରୋଧସତ୍ତ୍ୱେ ରାଗିଣୀ ଆପଣା ବାଟରେ ଅଟଳ ରହିବା ଦେଖି ସାହି ପଡ଼ିଶା ମାଇକିନିଆଙ୍କ ଆଖି ଆହୁରି ଜଳି ଉଠିଲା। ଏଥର ମୁହଁ ଉପରେ ଦି ପଦ ଶୁଣେଇ ଦେବାକୁ ବି ଅଳିକା ପଛେଇଲେ ନାହିଁ।

ଏ ଅବାଞ୍ଛିତ ପରିସ୍ଥିତିରେ ରାଗିଣୀର ମନ ଯେତେବେଳେ ଛଟପଟ ହେଉଥିଲା, ଠିକ୍ ସେତିକିବେଳେ ଦି ପହର ତିନିଟାରେ ଡାକ ପିଅନ ଖଣ୍ଡିଏ ଏୟାରମେଲ ଲଫାଫା ଆଣି ବଢ଼ାଇ ଦେଲା। ଲଫାଫା ଉପର ହସ୍ତାକ୍ଷର ଦେଖୁ ଦେଖୁ ରାଗିଣୀର ମନ ପ୍ରାଣରେ, ଜୀବନରେ ପ୍ରଥମ ଥର ଲାଗି ଖେଳିଗଲା ଏକ ଅପୂର୍ବ ରୋମାଞ୍ଚ, ଯାହାର ପରଶ, ଯାହାର ସ୍ୱରୂପ ସେ କେବେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲା । ସେ ସରୀରରେ ଆନନ୍ଦ, ଉଦ୍‌ବେଗ, ଆଶଙ୍କା ଓ ବିଶ୍ୱାସର ମିଶାମିଶି ଏକ କଳ-କଲ୍ଲୋଳିତ ପ୍ରବାହରେ

ଖସି ଯାଉଥିଲା ପରି ବୋଧକଲା । ଆଖି ପିଛୁଳାକେ ଲଫାଫାଟିକୁ ଫାଡ଼ିଦେଇ ପଢ଼ିଲା—

ପ୍ରିୟତମା ସଙ୍ଗିଣୀ,

ରଣକ୍ଷେତ୍ରରୁ ମୋର ନିବିଡ଼ ସ୍ନେହାନୁରକ୍ତ କଲ୍ୟାଣ ନେବ । ଏତେକରି ମନା କରିଥିଲ, ମନେ ନ ପକାଇବାକୁ, ଚିଠି ନ ଲେଖିବାକୁ । ହେଲେ ଆଉ ପାରିଲି ନାହିଁ, ଗୌରବମୟ ରଣଯଜ୍ଞର ହୋମାଗ୍ନିରେ ଥରେ ମାତ୍ର ଗାତ୍ର ପଖାଳି ସାରିବା ପରେ, ତମର ପରମ ପୁଲକଭରା ତନୁ, ମନ ସ୍ପର୍ଶ ନ କରି ରହିପାରୁ ନାହିଁ । ମୋର ମନ, ପ୍ରାଣ, ଅଙ୍ଗୁଳି ଓ ଲେଖମାର ପରଶ ନେଇ ଏ ଯେଉଁ ଅକ୍ଷରର ଥାକଗୁଡ଼ିକ ଏ ଚିଠି ଆକାରରେ ଯିବ, ତମର ହାତ, ଆଙ୍ଗୁଠି ଓ ନୟନ ମନକୁ ସ୍ପର୍ଶ କରିବ ନାହିଁକି ? ସେ ଯେଉଁ ସ୍ୱର୍ଗୀୟ ସୁଖ, ମୁଁ ଏଠି ଥାଇ ବି ଯେ ଅବିକଳ ଉପଭୋଗ କରି ପାରିବି, ସେଥିପାଇଁ ମୁଁ ନିଶ୍ଚିନ୍ତ ଓ ନିଃସନ୍ଦେହ ।

ଜାଣେ ନାହିଁ, ଏ ଚିଠି ପହଞ୍ଚିଲା ବେଳକୁ ତମେ ଘରେ ଥିବ କି ନାହିଁ । ହୁଏତ ବାପ ଘରେ ତମର ବୋଉ କି ନାନୀ ଏ ଚିଠି ଖଣ୍ଡିକ ପଢ଼ି ଆତୁର ବିକଳ ହୋଇ ଉଠିବେ, ଭୋ ଭୋ ହୋଇ କାନ୍ଦିବେ । ଅବଶ୍ୟ ଏପରି ଦୁର୍ବଳତା, ଅସହାୟତା କୌଣସି ମଣିଷଠାରୁ ମୁଁ ଆଶାକରୁ ନାହିଁ ।

'ଗଲା ଜନ୍ମକୁ ଭୁଲିଗଲା ପରି ରଣକ୍ଷେତ୍ରରେ ମୋତେ ଭୁଲିଯିବ ।' ତମେ ଅନୁନୟ କରି କହିଥିଲ, ବାରମ୍ବାର ଅନୁରୋଧ କରିଥିଲ । ଆଜି ପର୍ଯ୍ୟନ୍ତ ମୁଁ ତମ କଥା ରଖିଲି । ଭୀମ ଘର୍ଘର ଗର୍ଜନ ମୁଖର ସାଗର ଲହରୀ ପରି ବିପୁଳ କର୍ତ୍ତବ୍ୟଚୟର ନିବିଡ଼ ନିମନ୍ତ୍ରଣରେ

ଏ ପର୍ଯ୍ୟନ୍ତ କଜେ ମୁଁ କଜକୁ ବି ଭୁଲି ଯାଇଥିଲି । ଚିଠି ଲେଖିବାକୁ ଚେଷ୍ଟା ବି କରୁ ନ ଥିଲି । ସେଦିନ ଠାରୁ କାଲି ପର୍ଯ୍ୟନ୍ତ ଅବସ୍ଥା ଭିନ୍ନ ରକମର ଥିଲା । ଏ ବିଶ୍ୱର ସୃଷ୍ଟି ସ୍ଥିତି ଓ ପ୍ରଳୟର ଭିତ୍ତି ଆଧାର ଯେଉଁ ମହାଶକ୍ତି—ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ— ସେ ପ୍ରଳୟଙ୍କରୀ ରଣଚଣ୍ଡୀ ରୂପରେ ଅବତୀର୍ଣ୍ଣା ହୋଇଥିଲେ । ତାଙ୍କର ଭୟଙ୍କର ନୂପୁର ରଣନର ରୁଦ୍ର ଝଙ୍କାର, ରଣଭୂମିର ପ୍ରତ୍ୟେକ କ୍ରିୟାଶୀଳ ପ୍ରାଣୀ, ପଦାର୍ଥ, ଯନ୍ତ୍ର ଓ ଅସ୍ତ୍ରଗୁଡ଼ିକୁ ସଦା ତତ୍ପର ବିଶ୍ରାମହୀନ କରି ଦେଇଥିଲା । ଏବେ ଚୀନ୍‌ର କମ୍ୟୁନିଷ୍ଟ ଦସ୍ୟୁମାନେ ସ୍ୱତଃଅସ୍ତ୍ର ସମ୍ବରଣ କରିଛନ୍ତି । ରଣଚଣ୍ଡୀ ମହାମାୟୀ କଲ୍ୟାଣୀ ରୂପରେ ବିଚରଣ କରୁଛନ୍ତି । ଆମେ ଆଜି ସେହି ଦସ୍ୟୁ ଦଳର ଗତିବିଧି ଉପରେ ସତର୍କ ଦୃଷ୍ଟି ରଖି ସୀମାନ୍ତର ପ୍ରତିରକ୍ଷା ବ୍ୟୂହଗୁଡ଼ିକୁ ସୁଦୃଢ଼ କରୁଛୁ ।

ତୁମଠାରୁ ବିଦାୟ ନେଇ ସୈନ୍ୟ ବାହିନୀରେ ଯୋଗଦେବା ପାଇଁ ଯେଉଁଦିନ ମୁଁ ଜୟପୁର ଛାଡ଼ିଲି, ସେହି ଦିନ ଅନୁଭବ କଲି ଯେ, ମୋର ପୁନର୍ଜନ୍ମ ହୋଇଯାଇଛି । ମୁଁ ଏକ ନୂତନ ଦେହ, ନୂତନ ମନ ଓ ନୂତନ ଜୀବନ ଲାଭ କରିପାରିଛି ବୋଲି ଏ ଯାବତ ପରିଷ୍କାର ଅନୁଭବ କରିପାରୁଛି । ତା ପରଠାରୁ ଆଜି ପର୍ଯ୍ୟନ୍ତ ପ୍ରତି ମୁହୂର୍ତ୍ତରେ ମୁଁ ଯେଉଁ ବିଚିତ୍ର ପ୍ରାଣରୋଚକ ଅନୁଭୂତିଗୁଡ଼ିକର ହାବୁଡ଼ରେ ପଡ଼ୁଛି, ପ୍ରତିମୁହୂର୍ତ୍ତରେ ବିସ୍ମିତ ହେଉଛି, ସବୁ କଥା ଖୋଲିଖୋଲି ଲେଖିବାକୁ ବେଳ କାହିଁ ? ରଣଯଜ୍ଞରେ ବ୍ୟକ୍ତିଗତ ସ୍ୱାର୍ଥ, ଅହଂକାର, ଦୁର୍ବଳତା ଓ ଆସ୍ଫାଳନକୁ ଆହୁତି ଦେବାକୁ, ଏ ମହାଯଜ୍ଞରେ ବିଶ୍ୱଶାନ୍ତି କାମନା କରି ବରୁଣ ହେବାକୁ ଯିଏ ଆଗେଇ ନ ଆସିବ, ସେ କେତେ କହିଲେ ମଧ୍ୟ ବୁଝି ପାରିବ ନାହିଁ, ଏ ମହା ରହସ୍ୟ, ଏ ମହା ରୋମାଞ୍ଚକର ଶିହରଣର ସୁଆଦ ।

ଆଜି ଯେଉଁମାନେ ଏ ବାଟରେ ଅନେକ ଦୂର ଅଗ୍ରସର ହୋଇଛନ୍ତି, ଅଥଚ ଏମିତି କିଛି ଅଲୌକିକ ଅନୁଭୂତି କଥା ଜାଣନ୍ତି ନାହିଁ, ତେବେ ଧରିନେବାକୁ ହେବ ସେମାନେ ଏବେବି ଅଜ୍ଞ, ଅସିଦ୍ଧ । ପାଠଶାଳାର ପ୍ରାଥମିକ ସ୍ତର ପରି କରୁଣାର ପାତ୍ର ସେମାନେ ।

ଆଜି ସେହି ପୁରାଣ-ପ୍ରସିଦ୍ଧ ତୁଷାର-ଧବଳ ହିମାଳୟର ମହିମାମୟ ହିମକୋଳରେ, ତୁମ୍ଭମାନଙ୍କ ନିକଟରୁ ୧୯ ହଜାର ଫୁଟ ଉଚ୍ଚରେ ମାତୃଭୂମିର ସୁରକ୍ଷା ପାଇଁ ପହରା ଦେଲାବେଳେ, କ୍ଷୁଦ୍ରାଦପିକ୍ଷୁଦ୍ର ସାଧାରଣ ମଣିଷଟିଏ ହୋଇ ମଧ୍ୟ କି ମହାନ, କି ଅବିସ୍ମରଣୀୟ ଦୁର୍ଲଭ ପୁଲକରେ ତନୁ, ମନ, ମୋର ପୁଲକିତ ହୋଇ ଉଠୁଛି, ତାହା ଏ କ୍ଷୁଦ୍ର ଚିଠିରେ ବୁଝାଇ ପାରିବି ନାହିଁ । ବିପୁଳ ସୌଭାଗ୍ୟ ଓ ସମ୍ପଦର ଅଧିକାରୀ ଆମର ଭାରତଭୂମିର ସୁରକ୍ଷାପାଇଁ ମୁଣ୍ଡପାତି ଆମେ ଦାୟିତ୍ୱ ନେଇଛୁ । ଏ ଦେଶର କୋଟି କୋଟି ଶିଶୁ, ତରୁଣ, ବୃଦ୍ଧ, ତରୁଣୀ ଓ ବୃଦ୍ଧାମାନଙ୍କର ଜୀବନର ପ୍ରତିରକ୍ଷା ଆଜି ଆମରି ବାହୁବଳ, ମନବଳ ଓ ବୁଦ୍ଧିବଳ ଉପରେ ନିର୍ଭର କରୁଛି । ଏ କଥା ଭାବିଲାବେଳେ ମୁଁ ତ ମରଣ କଣ, ଜୀବନ କଣ ଓ ଜନମ କଣ କଳ୍ପନା କରି ପାରୁନି ।

ଭାରତ ସୀମାନ୍ତ, ମହିମାମୟ ହିମାଳୟର ଚିର ପବିତ୍ର ବକ୍ଷ ଉପରେ ସିଂହ ଶିଶୁପରି ବୀର ବିକ୍ରମରେ ବିଚରଣ କଲାବେଳେ— ସତ କହୁଛି ଭଗିନୀ! ତମର ସୁନ୍ଦର ମୁହଁ, ତମର କଲ୍ଲୋଳିତ ଚୂର୍ଣ୍ଣକୁନ୍ତଳ, ତମର ସେହି ମମତାକାତର କଟାକ୍ଷର ସ୍ମୃତି ମୋର ମନୋବଳକୁ କୋଟିଗୁଣିତ କରି ଦେଉଛି । ମୋର ମନେ ହେଉଛି, ତମର ପ୍ରେରଣାରେ ହିଁ ମୋ ଦେହ, ମନ ଓ ଚିତ୍ତ ମଧ୍ୟରେ ଏ ଅଚିନ୍ତନୀୟ ଶକ୍ତିର ଉତ୍ସ, ଅନନ୍ତ ଅଖଣ୍ଡ ପ୍ରବାହ ଛୁଟାଇଛି । ଏ ଶକ୍ତି, ଏ ପ୍ରବାହ ଚିର ଅକ୍ଷୟ ଓ ଅଦମନୀୟ !

ସୁଚରିତା ଭଗିନୀ,

ତମେ ନିଶ୍ଚିନ୍ତ ରୁହ । ଏ ଦେହର ପତନ, କୋଟି କୋଟି ଭାରତବାସୀଙ୍କର ପତନ—ପୃଥିବୀର ନିୟୁତ ନିୟୁତ ଶାନ୍ତିକାମୀ ନର ନାରୀଙ୍କର ପତନ— ରୂପରେ ପରିଗଣିତ ହେବ । ତେଣୁ ଏ ଶରୀର ଉପରକୁ ଯେପରି ବିପଦ ଆସିବା ବେଳକୁ ଏହି କୋଟି କୋଟି ନିୟୁତ ନିୟୁତ ପୁଣ୍ୟାତ୍ମାମାନଙ୍କର ସଦିଚ୍ଛା ପବନରେ ମିଳାଇ ଯିବନାହିଁ । ମୋର ଏ ବିଶ୍ୱାସ, ଅଭ୍ରାନ୍ତ । ଯୁଗ ଯୁଗ ଧରି ସାଧୁ ସନ୍ଥମାନଙ୍କର ଜନ୍ମଭୂମି, ପୁଣ୍ୟଭୂମି ଭାରତର ସଞ୍ଚିତ ପୁଣ୍ୟ ବଳରେ ଆମେ ଏ ଉତ୍ତର ସୀମାରେ ପହରାଦାର ପ୍ରତ୍ୟେକ ଜଓ୍ୱାନ ଆଜି ଦୁର୍ଦ୍ଦାନ୍ତ, ଦୁର୍ଜ୍ଜେୟ, ବଳୀୟାନ ହୋଇ ଉଠିଛୁ । ଅକ୍ଲେଶରେ ଶତ୍ରୁର ମାୟା ଭେଦ କରିବାକୁ ସମ୍ପୂର୍ଣ୍ଣ ସକ୍ଷମ ହୋଇଅଛୁ । ଆମେ ପୃଥିବୀର ଯେ କୌଣସି ପରାକ୍ରମଶାଳୀ ପାପ ଶକ୍ତିକୁ ଏଥର ପରାହତ କରିଦେଇ ପାରିବୁ । କିନ୍ତୁ ଗୋଟିଏ କଥା ଚିରଦିନ ଲାଗି ମୋତେ ମାନି ନେବାକୁ ପଡ଼ିବ ଯେ ମୋର ଏ ଯେଉଁ ପରମ ସୌଭାଗ୍ୟ ଭୋଗ, ଏ ଯେଉଁ ମହାଯୋଗ ସାଧନର ସୁଯୋଗ ଲାଭ, ଏହା କେବଳ ତମରି ଦାନ ।

କାହିଁ ସେ କ୍ଷୁଦ୍ର ଜୟପୁର ସହର, ଯେଉଁଠି ବଞ୍ଚିବା ପାଇଁ, ଖାଇବା ପାଇଁ, ଭୋଗ କରିବା ପାଇଁ, ଦିନ ଦିପହରରେ, ମଝି ଦାଣ୍ଡରେ ଲୋକେ କାମୁଡ଼ା କାମୁଡ଼ି ହୁଅନ୍ତି, ଗଡ଼ାଗଡ଼ି ହୁଅନ୍ତି—ଆଉ କାହିଁ ଏ ସ୍ୱର୍ଗର ରଜତ ପାହାଚ ହିମାଳୟର ଚିର-ଉଦାର, ଚିର-ପ୍ରଶାନ୍ତ ଚିର-ନୀରବ, ଚିର-ଶାନ୍ତିର ସୁଖମୟ କୋଳ ! ମୁଁ ଆଜି ସ୍ତମ୍ଭୀଭୂତ ହୋଇ ପଡ଼ୁଛି ଭଗିନୀ ! ମୁଁ କିଏ ଏ ଅଲୌକିକ ସୌଭାଗ୍ୟର ଅଧିକାରୀ ହେବାକୁ ? ସେଦିନ ତମେ ଯଦି ମୋତେ ଉତ୍ସାହିତ କରି ନ ଥାନ୍ତ, ହୁଏତ ସେ ଉତ୍ତେଜନାଶୂନ୍ୟ ଶାନ୍ତିଭୂମି ଜୟପୁର ମାଟିରୁ

ପାଦ କାଢ଼ି ରଣଯଜ୍ଞର ନାୟକ ହେବାକୁ ମୁଁ ଆଜ ମନ ବଳାଇ ନ ଥାନ୍ତି । ହୁଏତ ସେନାବାହିନୀକୁ ଫେରି ଆସିବା ଏ ଜନମରେ ଆଉ ସମ୍ଭବ ହୋଇ ନ ଥାନ୍ତା । ହୁଏତ ମୋ କମ୍ୟୁନିଷ୍ଟ ସାଙ୍ଗର ଗୋପନ ପ୍ରବର୍ତ୍ତନା ମାନି ମୁଁ ମଧ୍ୟ ଦରିଦ୍ର ଡାକ୍ତରକୁ ଦଶ, ପଚିଶ ଦେଇ ସ୍ୱାସ୍ଥ୍ୟଭଙ୍ଗର ପ୍ରମାଣପତ୍ର ସଂଗ୍ରହ କରିଥାନ୍ତି, ଖସି ଯାଇଥାନ୍ତି ଅନ୍ୟମାନଙ୍କ ପରି । କିନ୍ତୁ ସେ କଥା ସ୍ମରଣ କଲାମାତ୍ରେ ଏବେ ଲଜ୍ଜାରେ ଘୃଣାରେ ମୋ ଦେହର ପ୍ରତ୍ୟେକ ଅସ୍ଥି ଖଣ୍ଡରୁ ଛେଲି ଛେଲି ମାଂସ ଛିଣ୍ଡି ପଡ଼ିଲା ପରି ଲାଗୁଛି । ଏ ମିଥ୍ୟା, ମାୟା ଜର୍ଜରିତ ସଂସାରରେ ଅତୁଳନୀୟ ମଣିଷ ଜନମ ପାଇ ମଧ୍ୟ ମଣିଷ ଏତେ ନୀଚ ଏତେ ହୀନ ଆଚରଣ କରିପାରେ ? ଆଜ ମୁଁ ବିଶ୍ୱାସ କରି ପାରୁନି । ଯେଉଁମାନେ ଏପରି କରନ୍ତି, ସେମାନେ ବିଷପାନ କରି ଆତ୍ମହତ୍ୟା ଯେ ନ କରନ୍ତି କାହିଁକି, ମୁଁ କଳ୍ପନା କରି ପାରୁନି ।

ଏ ବିଶ୍ୱବ୍ରହ୍ମାଣ୍ଡର ସ୍ଥିତି କେବଳ ପ୍ରବଳ ସତ୍ୟ ବଳ ଉପରେହିଁ ପ୍ରତିଷ୍ଠିତ । ଏଠି ଖଳତା, ମିଥ୍ୟା, ମାୟାର ସ୍ଥାନ ଅତି ତୁଚ୍ଛ, ଅତି ନଗଣ୍ୟ ! ପାପାତ୍ମା ଚୀନାମାନଙ୍କ ସହିତ ସଂଗ୍ରାମ କରିବାରେ ଯେ ଆନନ୍ଦ, ଯେ ଗୌରବର ସମ୍ଭାବନା ରହିଛି; ମୋର ତ ମନେ ହେଉଛି, ମଣିଷ ସାରା ଜୀବନ ଧରି କଠୋର ତପସ୍ୟା କରି ସାରିବା ପରେ ମଧ୍ୟ ଯଦି ସାମାନ୍ୟ ଟିକିଏ ସମୟ ପାଇଁ ଏକ ସେକେଣ୍ଡ ଲାଗି ଏ ଆନନ୍ଦ, ଏ ଗୌରବରୁ କାଣିଚାଏ ନିର୍ଯ୍ୟାସପ୍ରାପ୍ତ ହୋଇପାରେ, ତା ହେଲେ ତାହାହିଁ ସମଗ୍ର ମାନବ ସମାଜର ନିତ୍ୟକାମ୍ୟ ହେବା ଉଚିତ ।

ସାତ ଦିନ ତଳେ ଆମ୍ଭେମାନେ ଯେତେବେଳେ ଏହି ସୀମାନ୍ତ ଘାଟିରେ ପ୍ରାଣମୂର୍ଚ୍ଛା ଲଢ଼େଇ କରୁଥିଲୁ, ଆକ୍ରମଣକାରୀ ଶତ୍ରୁ ବାହିନୀରୁ ଏକ ଏକ କରି ସହସ୍ର ସହସ୍ର ସୈନିକଙ୍କୁ ମାରି ଶୁଆଇ

ହେଉଥିଲି; ସେତେବେଳେ ମୋର କଣ ମନେ ହେଉଥିଲା ଜାଣ ?
ମନେ ହେଉଥିଲା, ଏ ଯେ ମେସିନ୍ ଗନ୍ ଗୁଳିଛି, ତାହା ମୁଁ ଚଳାଉ
ନାହିଁ, ମୋ ଭିତରେ ପ୍ରବେଶ କରିଛି ଏକ ଅଦୃଶ୍ୟ ମହାଶକ୍ତି ଏବଂ
ସେ ଶକ୍ତିର ପ୍ରଖର ପ୍ରବାହର ଇଚ୍ଛା ଅନୁସାରେ ମୋର ହାତ, ପାଦ,
ଆଖି ଓ ହୃଦୟର କାମ କରୁଛି । ମୁଁ ନିଜ ଆଖିରେ ଦେଖିଛି—
ଯେତେବେଳେ ମୋ ମେସିନ୍ ଗନ୍ ନିର୍ଗତ ଗୁଳିମାଡ଼ରେ ଗୋଟିଏ
ଚୀନା ସୈନିକ ଟଳିପଡ଼େ, ମୋତେ ଲାଗେ ଯେ ଏ ପୃଥିବୀରୁ ପାପ
ଶକ୍ତିର, ଅନ୍ୟାୟ, ଅଶାନ୍ତି, ଅନାଚାରର ଗୋଟାଏ ସୁଦୃଢ଼ ଆଶ୍ରୟ
ଧ୍ୱଂସ ହୋଇଗଲା, ଧୂଳିରେ ଉଡ଼ିଗଲା ।

ସତ କହୁଛି ଭଗିନୀ, ସେଦିନ ମୁଁ ଓ ମୋର ମାତ୍ର କେଇଜଣ
ସହଗାମୀ ଯବାନ ହଜାର ହଜାର ଦୁର୍ଦ୍ଦାନ୍ତ ଆକ୍ରମଣକାରୀଙ୍କ ଅସ୍ତ୍ର
ସଜ୍ଜିତ ବାହିନୀର ସମ୍ମୁଖୀନ ହୋଇ ଆଖି ପିଛୁଡ଼ାକେ ଶହ ଶହ
ଚୀନା ଦସ୍ୟୁଙ୍କୁ ନିପାତ କରି ଦେଉଥିଲା ବେଳେ, ରଣଯଜ୍ଞର ସେ
ଅନିର୍ବଚନୀୟ ଉତ୍ତେଜନାରୂପକ ହୋମାଗ୍ନିରେ ଯଦି ମୋତେ ମୋର
ଏ ନଶ୍ୱର ଦେହ ପରିତ୍ୟାଗ କରିବାକୁ ହୋଇଥାନ୍ତା, ତେବେ ମୁଁ
ଏତେ ଆନନ୍ଦିତ ହୋଇଥାନ୍ତି ଯେ ତମେ ତାହା କଳ୍ପନା କରିପାରି
ନ ଥାନ୍ତ କି କେବେହେଲେ କଳ୍ପନା କରି ପାରିବ ନାହିଁ ମଧ୍ୟ ।
କିନ୍ତୁ ମୁଁ ମଲିନାହିଁ । ଅଗଣିତ ଶତ୍ରୁ ସୈନ୍ୟଙ୍କ ଅନାକାଂକ୍ଷିତ
ଅଗ୍ରଗତି ସତ୍ତ୍ୱେ ଯେତେବେଳେ ମୁଁ ଆମର ଅନ୍ୟାନ୍ୟ ଜୱାନମାନଙ୍କ
ସହ ସଂଗ୍ରାମରତ ଥିଲି, ମୁଁ ସ୍ପଷ୍ଟ ଅନୁଭବ କରି ପାରୁଥିଲି ଯେ,
ଆମ ଭିତରେ, ଦେହର ପ୍ରତି ଶିରା ପ୍ରଶିରାରେ ପୃଥିବୀର ନିଯୁତ
ନିଯୁତ ଶାନ୍ତିକାମୀ ଉତ୍ସୁକ ଆତ୍ମାମାନଙ୍କର ଜୀବନ୍ତ ଆଶୀର୍ବାଦ ଏକ
ତେଜୋଦୀପ୍ତ ତଡ଼ିତ୍ ପ୍ରବାହ ପରି ପ୍ରବେଶ କରି ଅନନ୍ତ ଶକ୍ତି ସଞ୍ଚାର
କରୁଥିଲା ।

ତମେ ବିଶ୍ୱାସ କର କି ନ କର, ମୁଁ କିନ୍ତୁ ଏଥର ପରିଷ୍କାର ଭାବେ କହିବି, ଏହି ପୃଥିବୀର କୋଣେ କୋଣେ ବିଚରଣ କରୁଥିବା ପ୍ରତ୍ୟେକ ପ୍ରାଣୀ, ପରସ୍ପର ଠାରୁ ଭିନ୍ନ କି ବିଚ୍ଛିନ୍ନ ନୁହନ୍ତି । ଏକାଗ୍ରତା, ଧ୍ୟାନ, ଧାରଣା, ଶ୍ରଦ୍ଧା ଓ ବିଶ୍ୱାସବଳରେ ସହସ୍ର ସହସ୍ର ଯୋଜନ ଦୂରରୁ ମଧ୍ୟ ଜଣେ ଆଉ ଜଣକ ସହ ଯୋଗାଯୋଗ ଅବ୍ୟାହତ ରଖିପାରେ । ମୋର ବିଶ୍ୱାସ, ଆମ୍ଭମାନଙ୍କ ସହିତ ସମଗ୍ର ପୃଥିବୀର ଅଖଣ୍ଡ ମାନବିକତା ବିଜୟଲାଭ ନିମନ୍ତେ ଏକାକାର ହୋଇ ଅଗ୍ରସର ହେଉଛି ।

ଆହୁରି ଅନେକ କଥା ଲେଖିବାକୁ ଅଛି । କିନ୍ତୁ ବେଳ କାହିଁ ? ଧୀରେ ଧୀରେ ସବୁ ଲେଖିବି । ସବୁ କହିବି ।

ବୀରାଙ୍ଗନାର ଦେଶ, ଭାରତବର୍ଷର ଝିଅ ତମେ, ତମକୁ ଅଧିକ କଣ ବୁଝାଇବି ? ତମେ ଆହୁରି ଏକାନ୍ତିକ ଭାବରେ ମାନବିକତାର କଲ୍ୟାଣ କାମନା କର । ଭାରତର ପ୍ରତିରକ୍ଷୀମାନଙ୍କୁ ସଦିଚ୍ଛା ଜଣାଅ । ସେ ସଦିଚ୍ଛାର ଅମର ନିର୍ଯ୍ୟାସ ସଂସ୍ପର୍ଶରେ ମୋର ଓ ଆମ ଯୋଦ୍ଧାମାନଙ୍କ ଶରୀରର ପ୍ରତ୍ୟେକ ରକ୍ତକଣା ବଜ୍ର ରେଣୁର ଶକ୍ତି ଧାରଣ କରୁ । ଏ ଦେଶ, ଏ ଜାତି, ଏ ମାନବ ସମାଜରେ ମାନବିକତାର ବିଜୟ ଘଟୁ ।

ପୁଣି ଥରେ କଲ୍ୟାଣ କର ଏ ପବିତ୍ର ରଣଭୂମିରୁ ବିଶ୍ୱପ୍ରେମର ଚିର ଉନ୍ମୁକ୍ତ ନିବିଡ଼-ଆଲିଙ୍ଗନ ନିବେଦନ କରୁଛି ।

ଆଜି ଏତିକି ।

ଗୁଣମୁଗ୍ଧ
ସଂଗ୍ରାମ

ରାଗିଣୀ ଏକା ନିଶ୍ୱାସରେ ଚିଠିଟି ପଢିସାରି ଅନୁଭବ କଲା, ଯେମିତିକି ଏ ଚିଠିଟି ତାକୁ ହଜାର ହଜାର ଥର ପଢ଼ିବାକୁ ପଡ଼ିବ, ଅଚିନ୍ତ୍ୟମୟ ସୁଖ ଭୋଗ କରିବାକୁ ହେବ ଅନନ୍ତ କାଳ ପର୍ଯ୍ୟନ୍ତ ।

ସକାଳୁଆ ଅଳସ ସୂର୍ଯ୍ୟର ଉଷୁମ କିରଣ କ୍ରମେ କ୍ରମେ କ୍ଷୀଣ ହୋଇ ଆସୁଥିଲା । ମୁନଗା ଗଛ ତଳେ, ଚୁଇ ଚୁଇଆ ଅଗଣାଟାରେ ପଦଚାରଣ କରିବାକୁ ଭାରି ଭଲ ଲାଗୁଥିଲା ।

ମୁହଁ ସାରା ବଢ଼ି ଉଠିଥିବା ଅଧ ଇଞ୍ଚ ଲମ୍ବା ଦାଢ଼ିଗୁଡ଼ିକୁ ଅଣ୍ଟାଳୁ ଅଣ୍ଟାଳୁ ଗଳ୍ପକାର ଗଗନ ବିହାରୀ ଭାବିବାକୁ ଲାଗିଲା— ଏ ଘର, ଏ ଅଗଣା, ଏ ବାଡ଼ି ବଗିଚା ଆହୁରି ଆହୁରି ସିନେମାର ନାୟକଙ୍କ ଘର ପରି ଓସାରିଆ, ଫର୍ଚା, ନିର୍ମଳ ଓ ଆଧୁନିକ ପରିପାଟୀ-ନିଘଞ୍ଚ ହୋଇଥାନ୍ତା । ପଢ଼ାଘର ସାମ୍ନାରେ ଯଥେଷ୍ଟ ଛଡ଼ା ଛଡ଼ାରେ ଶହେ ଖଣ୍ଡେ ପରି ଜାତି ଜାତିକା ଫୁଲଗଛ ଲାଗିଥାନ୍ତା । ବିଲାତି ଫଳଗଛ ଓ ସୁନ୍ଦରିଆ ପତର ଥାଇ ଫଳହୀନ ଗଛ ବି ଦଶ ବାର କି ପନ୍ଦରଟା ପର୍ଯ୍ୟନ୍ତ ଠିଆ ହୋଇଥାନ୍ତେ । ଫୁଲଭରା ଗଛ ଲତାଗୁଡ଼ିକ ଧିର ପବନରେ ମୁଣ୍ଡ ହଲେଇ କବିତା ଆବୃତ୍ତି କରୁଥାନ୍ତେ । ଡାଳ ପକ୍ଷୀମାନେ ତାଳ ଦେଉଥାନ୍ତେ, ପଙ୍ଖା କରୁଥାନ୍ତେ । ପ୍ରଜାପତି ପ୍ରେମିକ ପ୍ରେମିକା ବେଳେ ବେଳେ ରସିକତା କରି ନାଚିଲା ପରି ନାଚିଲା ପରି ଉଡ଼ି ବୁଲୁ ଥାଆନ୍ତେ । ସାହି ପଡ଼ିଶାର ଯେଉଁ ଗ୍ରେଟ

ଶ୍ରେଷ୍ଠ ଉଲ୍ଲାସ ଉତ୍‌ଫୁଲତାରେ ଟୁକୁ ଟୁକୁ ଝିଅମାନଙ୍କୁ ଦେଖିଲେ ମନରେ ସ୍ନେହର ଝରଣା ଫିଟିପଡ଼େ, ସେହିମାନେ ଫୁଲ ତୋଳିବାକୁ ଆସୁଥାନ୍ତେ—ଯାଉଥାନ୍ତେ । ଅନେଇ ଦେଲେ ପିଲାଳିଆ ଅପୂର୍ବ ସରମରେ ଗଛ ଲତା ଦେହରେ ମିଶି ଯାଉଥାନ୍ତେ ।

ଆଜି ଏ ଘରର ଦୁଷ୍ଟ ପିଲାଗୁଡ଼ାକ ସବୁବେଳେ ସ୍କୁଲରେ ପାଠ ପଢ଼ୁଥାନ୍ତେ । ଦିନ ସାରା ଏପରି କି ରାତି ଶୋଇବା ବେଳ ପର୍ଯ୍ୟନ୍ତ ସେମାନେ ଘରକୁ ଫେରୁ ନଥାନ୍ତେ । ପତ୍ନୀଙ୍କର ଏହି ପୁରୁଣା, ଦଦରା ଦେହଟା ସବୁବେଳେ ସେହି ଉପର ଘର ଖଟଟାରେ ଗଡ଼ୁଥାଆନ୍ତା । ତାଙ୍କୁ କୌଣସି ରୋଗ ଆକ୍ରମଣ କରନ୍ତା ନାହିଁ ଅଥଚ ସେ ଏ ପଢ଼ାଘର ପର୍ଯ୍ୟନ୍ତ କୌଣସି କାରଣରୁ ଆସିପାରୁ ନଥାନ୍ତେ । ତା ହେଲେ ଯାଇ କେଜାଣି ଭଲରେ ଭଲରେ ମନଇଚ୍ଛା ସାହିତ୍ୟିକ କଳା ସୃଷ୍ଟି ସମ୍ଭବ ହୋଇ ପାରନ୍ତା ।

ଭାବୁ ଭାବୁ ଗଗନ ବାହାରି ଦୀର୍ଘନିଶ୍ୱାସ ନେଇ ଘର ଭିତରେ ପଶିଲା । ଆଖିବୁଜି ମନେ ମନେ କେତେ କଣ ପ୍ରାର୍ଥନା କରିବାରେ ଲାଗିଲା ।

ସକାଳୁଆ ନିତ୍ୟକର୍ମ ସାରି ଟେବୁଲ ପାଖକୁ ଗଲା ବେଳକୁ 'କଳା-ଦର୍ପଣ'ର ସମ୍ପାଦକଙ୍କ 'ଜରୁରୀ ଚିଠି'ଟିଏ ପହଞ୍ଚିଲା । ଗଗନ ଭାବିଲା, ଏଟା ନିଶ୍ଚୟ ଗୋଟାଏ ବେଙ୍କ ଡ୍ରାଫଟ୍ ହୋଇଥିବ । କାରଣ ସେ ଅନେକ ବର୍ଷ ଧରି 'କଳା ଦର୍ପଣ' ପତ୍ରିକାକୁ ତାଙ୍କ ମନମୁତାବକ ଗଳ୍ପ ଲେଖି ଦେଉଛି, ଅଥଚ ଦିନେ ବି ପଇସାଟିଏ ପାଇନାହିଁ । ତେଣୁ······କିନ୍ତୁ ଲଫାଫା ଭିତରୁ ବାହାରିଲା କେବଳ ଖଣ୍ଡିଏ ଚିଠି । ନାଲି କାଳିରେ ଲେଖା ହୋଇଥିଲା—

"ମୋର ବିଶ୍ୱାସ, ଭାରତର ସୀମାନ୍ତ ଗଣ୍ଡଗୋଳ ନେଇ ଉପୁଜିଥିବା ଜାତୀୟ ବିପତ୍ତି ସମ୍ପର୍କରେ ଲେଖକମାନଙ୍କର ଗୁରୁଦାୟିତ୍ୱ ବିଷୟରେ ଆପଣ ନିଶ୍ଚୟ ସଚେତନ ଥିବେ । ସେହି ଭରସାରେ

ଅନୁରୋଧ କରୁଛୁ ଯେ, ଆମ ପତ୍ରିକାର ଆଗାମୀ 'ସମର ବିଶେଷାଙ୍କ' ପାଇଁ ଗୋଟିଏ ସର୍ବାଙ୍ଗ ସୁନ୍ଦର ସମର-ଗଳ୍ପ ପଠାଇବେ । ଏକ ତାରିଖରେ ପତ୍ରିକା ପ୍ରକାଶ ପାଉଛି । ଏଣୁ ୨୫ ତାରିଖ ପୂର୍ବରୁ ଲେଖାଟି ଆମର ହସ୍ତଗତ ହେବା ଆବଶ୍ୟକ । ଆଶାକରେ, ଜନ୍ମଭୂମି ପ୍ରତି ପବିତ୍ର କର୍ତ୍ତବ୍ୟ ସମ୍ପାଦନ କରିବାରେ ଆମ୍ଭମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଆଦୌ କୁଣ୍ଠିତ ହେବେ ନାହିଁ ।"

ଡାକ ବଙ୍ଗଳାରେ ବିଦେଶିନୀ ମେମ୍ ସାହେବ ବାସୀ ପାଟିରେ ଖଟରେ ବସି 'ବେଡ୍ ଟି' ଢୋକିଲା ପରି ଏକା ନିଶ୍ୱାସକେ ଚିଠିଟି ପଢ଼ି ସାରି ଗଗନ ତାର କ୍ୟାଲେଣ୍ଡର ସଂଯୁକ୍ତ ଘଡ଼ିକୁ ଅନାଇ ଦେଖିଲା, ଆଜ ଚବିଶି ତାରିଖ । ଅତଏବ ଆଜହିଁ ଗପ ଲେଖିବାକୁ ହେବ ।

'ଆଚ୍ଛା, ହେଉ ।'

ସେ ସେହି ବେଙ୍କ ଡ୍ରଫଟ୍ କଥା ଏକାବେଳକେ ଭୁଲିଯାଇ ପୁଣି କଲମ, କାଗଜ ବାହାର କଲା ।

"ଶୁଣୁଛ । ସେମାନେ ତମ ସାଙ୍ଗରେ କଣ କଥାବାର୍ତ୍ତା କରିବାକୁ ଆସିଛନ୍ତି ।"

ପତ୍ନୀ କୁସୁମ ବଲ୍ଲରୀ ପଛରେ ଠିଆହୋଇ ଆଦେଶିଲା ପରି ଓଜନିଆ ଗଳାରେ କହିଲେ । "ତମେ ସେ ଘରକୁ ଯିବ ନା ମୁଁ ସେମାନଙ୍କୁ ଏଠାକୁ ପଠାଇ ଦେବି ?"

"କାହାକୁ ?" ଗଗନ ଓଲଟି ପୁଚ୍ଛିଲା ।

"ମହିଳା ସମିତିର ସଭ୍ୟାମାନେ ପରା ଆସିଛନ୍ତି ।"

"କାହିଁକି ?"

"ଯୁଦ୍ଧ ପରା ବନ୍ଦ ହୋଇଯାଇ ଥିଲେ ବି ଆହୁରି ଲାଗିଯିବାର ସମ୍ଭାବନା ରହିଛି ?"

"ହଁ, ଅଛି ତ । ସେଇଠୁ ?..."

"ସେ ବିଷୟରେ ସେମାନେ କଣ କଥାବାର୍ତ୍ତା କରିବେ । ଅନେକ ବେଳୁ ଆସିଲେଣି । ଗଉଡ଼ ଦୁଧ ଆଣିଦେଇ ନାହିଁ । ମୁଁ ସେମାନଙ୍କୁ ଗୁହା କପେ କପେ ବି ଯାଚିପାରୁ ନାହିଁ । ବିଚରା ଯାକ ଅଲକ୍ଷଣା ପିଲା ଚଟାଣଟାରେ ହଗି ଦେଇଛନ୍ତି ଯେ, ଘର ଯାକ ଗୁହ ସାଲୁବାଲୁ...କି ଲଜ୍ୟାର କଥା କହିଲ ! ତୁମେ ହଁ କୁହ, ମୁଁ ସେମାନଙ୍କୁ ଏଠିକୁ ପଠାଇ ଦେବି ।"

"ଆଚ୍ଛା ଆଚ୍ଛା, ଯାହା କରିବାର ଚଞ୍ଚଳ କର । ମୁଁ ଆଉ କହିବି କଣ ? ମୁଁ ତ ମନ୍ତ୍ରୀ, ତମେ ମୋର ପି. ଏ.— ତମ କଥାରୁ ବାହାରି ଯିବାର ଉପାୟ କାହିଁ ?"

ପତ୍ନୀ ଗୁଲିଗଲେ ।

ଗଗନ ବିରକ୍ତ ହେଲା । ଆଚ୍ଛା କଥା, ଭଲରେ ଭଲରେ ମଣିଷ କଣ ଗୋଟାଏ ଲେଖିବ ବୋଲି ଆରମ୍ଭ କଲା ବେଳକୁ ଏ ମହାମାୟୀ, ମହାକାଳୀଙ୍କ ଅବତାରଗଣ କେଉଁଠି ଥିଲେ କେଜାଣି !

ସେ ସେହି ନମସ୍ୟା ମହୀୟସୀ ମହିଳାମାନଙ୍କ ଅପେକ୍ଷାରେ ମୁଣ୍ଡପୋତି ବସି ରହିଲା ।

ଟିକିଏ ପରେ ବାରଣ୍ଡା ଆଡୁ ଶୀତଳ ସ୍ପର୍ଶର ଆଭାସ ମିଳିଲା । ଗଗନ କାନ ଡେରିଲା ।

"ତୁମେ କୁହ ।"

"ତୁମେ ଆଗ କୁହ ।"

ବୋଲା ବୋଲି ହେଉ ହେଉ ଟିକିଏ ବିଳମ୍ବରେ ସମସ୍ତେ ଘର ଭିତରେ ପଶିଲେ । ଏତେ ଗୁଡ଼ାଏ ଚଉକି ତ ନଥିଲା । ତେଣୁ ଗଗନ ନିଜେ ଆଗତୁରା ଠିଆ ହୋଇପଡ଼ି ନମସ୍କାର କଲା ।

ସେମାନେ ମୁଣ୍ଡ ଲାଉଡ଼ିଲେ । ହାତ ଯୋଡ଼ିଲେ । ଜଳ ଜଳ ଅନାଇ ରହିଲେ, ପୂର୍ବ କାଳର ନବାବ ଦରବାରର ସହଚରୀମାନଙ୍କ ପରି । ଗଗନ ବେଶୀ ସମୟ ଅପେକ୍ଷା କରି ପାରିଲା ନାହିଁ ।

"କଣ, କୁହନ୍ତୁ !" ସେ ଅନୁରୋଧ କଲା ।

"ଆମେ ଗୋଟାଏ ପ୍ରସ୍ତାବ କରିଛୁ । ଏମିତିରେ ତ ଆଉ ଶ୍ରଦ୍ଧା ଦେବାକୁ ସମସ୍ତେ ମୁହଁ ମୋଡୁଛନ୍ତି । ପ୍ରତିରକ୍ଷା ଫଣ୍ଡ ନାମରେ ଆପଣ ଗୋଟାଏ ଭଲ ବହି ଲେଖି ଦିଅନ୍ତୁ । ଆମେ ତାକୁ ଛପେଇ ଚଢ଼ା ମୂଲ୍ୟରେ ବିକ୍ରୀ କରିବୁ । ଲାଭାଂଶ ପ୍ରତିରକ୍ଷା ପାଣ୍ଠିକୁ ପଠାଇବୁ ।"

ଶ୍ରୀମତୀ ପଟ୍ଟନାୟକ ଓ ଶ୍ରୀମତୀ ବ୍ରହ୍ମା ଏକାସାଙ୍ଗରେ ଲୁଚେଇ କହିଲା ଭଳି ଅନୁଚ୍ଚ କଣ୍ଠରେ ପାଳି କରି କହିଲେ ।

ଗଗନର ଲେଖକ-ଭାବନା ରେଳଗାଡ଼ି ପରି ଟାଣିହୋଇ ଟାଣିହୋଇ ମିନିଟକରେ ଜୟପୁରରୁ ପେକିଂ ଯାଏ ଲମ୍ବିଗଲା । ସେ ବି ଅନୁଚ୍ଚ ଗଳାରେ କହିଲା, "ଆଚ୍ଛା, ଆଚ୍ଛା— ଭାରି ଭଲ ପ୍ରସ୍ତାବ । ହେଉ, ତାହାହିଁ ହେଉ । ଆପଣମାନେ ଯା ଭିତରେ ମୂଳଧନ ଯୋଗାଡ଼ କରନ୍ତୁ । ମୁଁ ଲେଖି ଦେଉଛି । ଆଚ୍ଛା ଆଚ୍ଛା, କେତେ ଟଙ୍କା ଖଟାଇ ପାରିବେ ? ମାନେ କେତେ ପୃଷ୍ଠା ହେଲେ ସୁବିଧା ହେବ ?"

ଆଚରଣତଃ ବ୍ୟାକରଣର 'ସ୍ତ୍ରୀ ଲିଙ୍ଗ ବାଚକ' ଶବ୍ଦ ବ୍ୟବସ୍ଥାର ଉଦ୍ଦେଶ୍ୟକୁ ଅନେକାଂଶରେ ଅସ୍ୱୀକାର କରୁଥିବା ଏ ଭଦ୍ର ମହିଳା-ମାନେ ପରସ୍ପରକୁ ଅନାଅନି ହେଉ ହେଉ ପାହାନ୍ତିଆରୁ ସନ୍ଧ୍ୟାଯାଏ ପିଆଜ କିଆରୀରେ ପାଣି ମଡ଼ାଉ ଥିବା ପରଜା ଟୋକୀମାନଙ୍କ ଭଳି ଗମ୍ଭୀର ହୋଇଗଲେ ।

"କଣ କହିଲେ ?" ବହୁ କୁଣ୍ଠାର ସହିତ ଶ୍ରୀମତୀ ଚଉଧୁରୀ ନ ପଚାରିଲେ ନ ଚଳେ ବୋଲି ପଚାରିଲେ । କିନ୍ତୁ ଏ ପାଞ୍ଚଟା

ଅକ୍ଷର ଉଚ୍ଚାରଣ କଲାବେଳକୁ ବୋଧହୁଏ ତାଙ୍କ କପାଳ ଓ କଣ୍ଠରୁ ଜନମ ଝାଳ ବୋହି ପଡ଼ୁଥିବ ।

"ଓଃ ଆଚ୍ଛା ଆଚ୍ଛା—ତା ହେଲେ ଆପଣମାନେ ସେ ହିସାବ କିତାବ—ସେ ଟଙ୍କାକଡ଼ା ବେପାର କଥା ଜାଣନ୍ତି ନାହିଁ । ହଉ ହେଲା । ଆପଣମାନେ ଯାଆନ୍ତୁ । ମୁଁ ଲେଖୁଛି । ଟଙ୍କା, ଏଇ ଟଙ୍କା ଚାରି ଶହ ଖଣ୍ଡେ ଯୋଗାଡ଼ କରନ୍ତୁ ।"

ଚାରି ଶହ ଟଙ୍କା ନା ଶୁଣୁ ଶୁଣୁ ପିଳେହି ପାଣି । ସଭାନେତ୍ରୀ ଶ୍ରୀମତୀ ଜୟଲକ୍ଷ୍ମୀ ଭାବିଲେ, ଏଇତ ମାସେ ହେଲାଣି ଘର ଦ୍ୱାର, କୁଳ କୁଟୁମ୍ବର ସବୁ କଟକଣା, ସବୁ ଆବଶ୍ୟକତାକୁ ଗୋଡ଼ରେ ଆଡ଼େଇ ଦେଇ ଦେଶ ପାଇଁ, ଜାତି ପାଇଁ ବୋଲି ଛି ଛି ହୋଇ ଘର ଘର ବୁଲୁଛନ୍ତି ଯେ, ଏ ପର୍ଯ୍ୟନ୍ତ ଟଙ୍କା ପାଞ୍ଚ ଶହ ବି ପ୍ରତିରକ୍ଷା ପାଣ୍ଠିକୁ ପଠାଇ ପାରି ନାହାନ୍ତି । ଆଉ ସୁନା କେଇ ଭରି ଜମେଇ ପାରିଲେ ନାହିଁ ବୋଲି ତ ସେଦିନ ଏ. ଡ଼ି. ଏମ୍. ପରିହାସ ଛଳରେ ଏତେ ଲୋକଙ୍କ ଆଗରେ ବେ-ଫଇଜତ୍ କରି ବକଦେଇ ଗଲେ ଯେ, ସେହି ତାଡ଼ରେ ତାଡ଼ରେ ଜୟଶ୍ରୀ ମଠର କମ୍ପାନୀ ମାଲିକ ଘରକୁ ଯାଇ ଯାହା ଅପମାନ ପାଇଛନ୍ତି, ମନ ଜାଣିଛି । ଆଉ ଥରେ ଏମ୍. ଏଲ୍. ଏ ବାବୁ, ଜିଲ୍ଲା କଂଗ୍ରେସ ସଭାପତି ଯାଇ ଗୋଡ଼ ହାତ ଧରି ବୁଝା, ସୁଝା କରି ନଥିଲେ, ଆଉ କେବେ ସେମାନେ ଘରୁ ଗୋଡ଼ କାଢ଼ନ୍ତେ ନାହିଁ ।

"ଏ ପୁଣି ସେହି ଟଙ୍କା କଥା କହୁଛନ୍ତି କଣ ?" ଅନ୍ୟମାନେ କାବା ହୋଇ ଶ୍ରୀମତୀ ଚଉଧୁରୀଙ୍କର ପଚ୍ଛରିଲା ମୁହଁକୁ ଅନାଇ ରହିଲେ ।

ଭାରତର ଏହି ବୀରାଙ୍ଗନାମାନଙ୍କର ଏ ଦୟନୀୟ ପରିସ୍ଥିତି ଦେଖି ଗଗନର ମନରେ କରୁଣା ଜାତ ହେଲା । ସେ ବୁଝାଇ ଦେବାକୁ ଯାଇ କହିଲା, "୧୬ ପୃଷ୍ଠା ଛାପିବାକୁ କାଗଜ ସହ ଖର୍ଚ୍ଚ ୫୦ ଟଙ୍କା

ପଡ଼େ । ସେ ଅନୁସାରେ ପ୍ରାୟ ଶହେ ପୃଷ୍ଠାର ବହିଟିଏ ପ୍ରକାଶ କରିବାକୁ ବ୍ଲକ୍, ମଲାଟ ଇତ୍ୟାଦି ସହ ପ୍ରାୟ ୪୦୦ ଟଙ୍କା ଦରକାର ।”

“ଓଃ ଏଇ କଥା । କ ପ୍ରେସ୍‌ବାଲା ଧାରରେ ଛାପିଦେବେ ନାହିଁ କି ? ଆମେ ସେ ବାଗ ଜାଣୁ । ଫେକ୍ଟ୍ରି ଇନ୍‌ସପେକ୍ଟର, ଲେବର୍ ଅଫିସର, ଇନ୍‌କମ୍‌ଟେକ୍ସ ଇନ୍‌ସପେକ୍ଟର୍‌ଙ୍କୁ ସାଙ୍ଗରେ ଧରି ଆମେ ଯିବୁ । ସେ କିଛି ନୁହେଁ, ହୋଇଯିବ ।”

ଏଥର ପ୍ରସନ୍ନ ଗଳାରେ ଶ୍ରୀମତୀ ଜୟନ୍ତଲକ୍ଷ୍ମୀ ଶବ୍ଦଗୁଡ଼ିକ ବାନ୍ତି କରିଦେଇ ଗଲେ । ମିସ୍ କନକାମ୍ବା ଏତେବେଳଯାକେ କେଉଁଠି ଥିଲା କେଜାଣି, ହଠାତ୍ ଆଗେଇ ଆସି ମୁହଁ ହଲେଇ ହଲେଇ କହିଲା, “ସେଦିନ ସେ ମଠର କମ୍ପାନୀବାଲା ଘରକୁ ମଠେରି ଭେଇକେଲ୍ ଇନ୍‌ସପେକ୍ଟର, ଏସ୍. ପି. ଆଉ ଇନ୍‌କମ୍ ଟେକ୍ସ ଇନ୍‌ସପେକ୍ଟରଙ୍କୁ ଧରି ଗଲ ନାଇଁ? ଏମିତି ଗ୍ଲାଭରେ ଥୁ ଥୁ କରି ପଳେଇ ଆସିଲ କାହିଁକି ?”

ଏ କଥାରେ ଜୟନ୍ତଲକ୍ଷ୍ମୀ ବଡ଼ ଅପମାନିତ ବୋଧକଲେ । ହେଲେ କଣ କରିବେ, ସାହି ପଡ଼ିଶାର··· କାଲିର ଡମ୍ଫିଟାଏ, କଥା ଲହସରେ ହୁଏତ ମୁହଁରୁ ପଦେ ଖସିଗଲା ! ସେ ତୁନି ହେଲେ ।

“ଆଚ୍ଛା ଆଚ୍ଛା, ଆପଣମାନେ ଯାଆନ୍ତୁ । ମୁଁ ଲେଖା ଆରମ୍ଭ କରୁଛି ।”

ତରତରରେ ଗଗନ ଏତକ କହିଦେଇ ପିଣ୍ଡା ତଳକୁ ଓହ୍ଲେଇ ଗଲା । ଭଦ୍ର ମହିଳାମାନେ ବାଧ୍ୟ ହୋଇ ପଦ୍ମପାଦଗୁଡ଼ିକର ଅଭ୍ୟସ୍ତ ଚାଳନା ଆରମ୍ଭ କରି ଉଭେଇ ଗଲେ ।

ଗଗନ ଶାନ୍ତିରେ ଥରେ ନିଶ୍ୱାସ ନେଇ ପୁଣି ଭିତରେ ବସିଲା । ଘଡ଼ିକୁ ଚାହିଁ ଦେଖିଲା । ଯାଃ ଆଉ ମାତ୍ର ଘଣ୍ଟେ ସମୟ ରହିଲା । ଯାହା ଭିତରେ ଗପ ଲେଖା ହେବ, ଗାଧୁଆ ହେବ, ଖିଅର ନ ହେବ·

ଚେଛି ଖାଇବ ତ ! ସେଠୁ ଦଉଡ଼ ଅଫିସ୍—ଫାଇଲ ସାଙ୍ଗରେ, କର୍ମୀଙ୍କ ହୁଗୁଳା କରଣି ସାଙ୍ଗରେ ଯୁଦ୍ଧ । ଗଲା ଦିନ ତମାମ୍...

ତରତରରେ ସେ ଆରମ୍ଭ କଲା—

ସୀମାନ୍ତର ଆଗୁଆ ଘାଟିରେ ପହରା ଦେବାକୁ ଯିବା ବାଟରେ ଗୋଟିଏ ସେନା ଗୁଜୁରଣୀ ! ଏକ ଅଳସ ମୁହୂର୍ତ୍ତରେ ବିଷମ ରଣା ତଳେ ଉଠିଥିବା ମୁଥା ଘାସର ଚେପଟା ପତରଗୁଡ଼ିକୁ ପାଦର ବୁଢ଼ା ଆଙ୍ଗୁଠିରେ ଦଳୁ ଦଳୁ ବାଁ ପାଖରେ ଉଠିଥିବା ଦୁବ ଘାସର ଏକ ସମ୍ମିଳନୀ ଉପରେ ଆଖି ପକେଇଲା । ହଠାତ୍ ସେ ଭାବିଲା, ଯାହାହେଉ ଦୁବ ଘାସଗୁଡ଼ିକର ଏ ସମ୍ମିଳନୀ ଏକ କବି ସମ୍ମିଳନୀ ପରି ହୋଇଛି । କେଡ଼େ ଶାନ୍ତ, କେଡ଼େ ନୀରବ, କେଡ଼େ ନମ୍ର ଏମାନେ ! ସ୍ୱାଡ଼ୁଆ ଲୁହା ଖିଲମରା ବୁଟ୍ ଯୋତାର ହାଡ଼ୁଆ ତଳପା ତଳେ ଦଳଦେଇ ଗଲେ ବି ପାଟି ଫିଟାନ୍ତି ନାହିଁ । ପ୍ରତିଶୋଧର ସଂକଳ୍ପ ପୋଷଣ କରନ୍ତି ନାହିଁ ।

ତନ୍ମୟ ହୋଇ ସେ ପାଦରେ ଦଳ ଦେଇଥିବା ମୁଥା ଘାସର ପତର ସହିତ ଦୂରରେ ନୀରବରେ ଧ୍ୟାନମଗ୍ନ ଥିବା ସେ ଦୁବଘାସ ଗଛଗୁଡ଼ିକୁ ମନେ ମନେ ତୁଳନା କରିବାକୁ ଲାଗିଲା ।

"ବାପା, ମରିଗଲି" ଭେଁ କନା ସାନ ପୁଅ ହିଗନ୍ତ ଚିତ୍କାର କରି ଉଠିଲା ।

ଗଗନ ବିବ୍ରତ ହୋଇ କଲମ ଫୋପାଡ଼ି ଦେଇ ଧାଇଁଗଲା । ଇସ୍, ପିଚ୍ ପିଚ୍ ହୋଇ ତା ଗୋଡ଼ରୁ ରକ୍ତ ବୋହୁଛି । ମୁନିଆଁ ଲୁହା କଣ୍ଟାଟାକୁ ସେ ହାତରେ ଟାଣି ଧରିଛି ।

ଯାଃ ଶସ୍ତାରେ ଗୋଟାଏ ଅସ୍ଥାୟୀ ନିଯୁକ୍ତି ମିଳିଗଲା ।

ଆଉ ଗପ ଲେଖା ହେବ ନା ଫପ ଲେଖା ହେବ... ଧେତ୍...

ଗାଁ ଗଣ୍ଡାର ଖାଦ୍ୟ ପରିସ୍ଥିତି ନେଇ ଯୋଗାଣ ବିଭାଗର ସ୍ଥାନୀୟ କର୍ମକର୍ତ୍ତାମାନଙ୍କୁ ଧମକେଇବାକୁ ଚେଷ୍ଟା କରି ଆଇନତଃ ପରାଜିତ ହୋଇଯାଇ ଥିବାରୁ କାଲିଠୁଁ ସେ ବିବ୍ରତ ହୋଇ ପଡ଼ିଥିଲା । ପରାଜିତ ଓ ଅପମାନିତ ତାର ମଣିଷପଣିଆ ଆଉଠି ପାଉଠି ହେଉଥିଲା । ଏପରି ବିରକ୍ତିଆ ବେଳଟାରେ ମାଧବୀ ଓ ମିନତି ତାକୁ ବାଧି କରୁଥିବା ଦେଖି ସେ ଆହୁରି ଚିଡ଼ିଗଲା ।

ନନ୍ଦପୁର ଅଞ୍ଚଳର ବିଖ୍ୟାତ ଶ୍ରମିକ ଓ କୃଷକ ନେତା ଦିଗମ୍ବର ମହାପାତ୍ର ପତ୍ନୀ ମାଧବୀ ଓ ଝିଅ ମିନତିଙ୍କ ମିଳିତ ପ୍ରସ୍ତାବର ଘୋର ବିରୋଧ କରି ପାଟିକରି କହିଲା, ଏ ସବୁ ବାଜେ କାମଦ୍ୱାରା ମଣିଷ ଶକ୍ତି କ୍ଷୟ କରିବା ଉଚିତ ନୁହେ । ଯିଏ ମଲା, ଗଲା । ତାର ନାମ ଗୁଣ-ଗାରିମାକୁ ଯେତେ ଧୋଇ ଶୁଖେଇ ପାଛୁଡ଼ିଲେ ହେଲେ ହେବ କଣ ? ତାରି ଫଟୋଟାକୁ ପୂଜା କଲେ ମିଳିବ କଣ ? ବରଂ ବଞ୍ଚି ରହିଛନ୍ତି, କାମ କରୁଛନ୍ତି ଯେଉଁ ଦେଶସେବକମାନେ, ସେମାନଙ୍କୁ ସମ୍ମାନିତ କର; ସେମାନେ କଣ କହୁଛନ୍ତି ମନଦେଇ ଶୁଣ, ଚର୍ଚ୍ଚା କର; ତାଙ୍କର ଜୟନ୍ତୀ ଉତ୍ସବ କର, ସେମାନେ ଉତ୍ସାହିତ ହୋଇ ସମାଜ ଲାଗି ବେଶି ଖଟିବେ, ଅଧିକ ତ୍ୟାଗ କରିବେ; ଅନ୍ୟମାନେ ବି ଆଗ୍ରହୀ ହେବେ ।

ମାଧବୀ ମଧ୍ୟ ଦୃଢ଼ ସ୍ୱରରେ କହିଲା, କିନ୍ତୁ ସମାଜରେ ଯେଉଁମାନେ ଜନସେବା ନାଁରେ ଆପଣା ଅଚେତନ ମନର ଭ୍ରଷ୍ଟ-ଇଚ୍ଛା, ସ୍ୱାର୍ଥଜଡ଼ିତ କାମନା ପୂରଣ ପାଇଁ କାମ କରନ୍ତି, ସେମାନଙ୍କୁ ସାବଧାନ କରାଯିବ କିପରି ? ଏମାନଙ୍କୁ ସମାଜ ସେବକ ବୋଲି ପୂଜା କରିବା, ଉତ୍ସାହିତ କରିବା ଅର୍ଥ ଖୋସାମତ କରିବା । ତୁମେ ଯେଉଁମାନେ ଏପରି ନେତାମାନଙ୍କ ଗହଣରେ କାମ କର, ସେମାନେ ଉପରେ ଆସନ ଜମେଇ ବସିଥିବା ନେତାମାନଙ୍କୁ ଖୋସାମତ କରି ଆଉ ଦି ପାହାଚ ଚଢ଼ିଯିବା ଲାଗି ସେପରି କରିପାର । କିନ୍ତୁ ଆମର କାମ ହେଉଛି, ଆଦର୍ଶଚ୍ୟୁତ ସମାଜସେବକ, ନୀତିଭ୍ରଷ୍ଟ ଜନନେତା-ମାନଙ୍କୁ ସଙ୍ଗତ ଭାବରେ ସଚେତ କରେଇ ଦେବା ।

ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଶ୍ରାଦ୍ଧ-ଦିବସରେ ସମବେତ ଭାବରେ ଆମେ ତୁମ୍ଭ ପରି ସମାଜସେବକମାନଙ୍କୁ ଏବଂ ଯେଉଁମାନେ ନୂଆରେ ସମାଜର ସେବା କରିବାକୁ ଇଚ୍ଛା କରୁଛନ୍ତି, ସେମାନଙ୍କୁ ସତର୍କ କରାଇ ଦେବାକୁ ଚାହୁଁ ଯେ, ସମାଜସେବକ ଭାବରେ ଆଜି ଏ ଦେଶରେ ଯେଉଁ ଦୁର୍ବଳ ଆଦର୍ଶ ଗ୍ରହଣ କରାଯାଉଛି, ତାହା ପ୍ରକୃତ ସମାଜସେବୀର କରଣୀୟ ନୁହେଁ । ଉତ୍କଳମଣି ତାଙ୍କ ଜୀବନରେ ଯେଉଁ ଆଦର୍ଶ ଗ୍ରହଣ କରିଥିଲେ, ଯେଉଁ ନୀତି ଓ ନିଷ୍ଠା ଅନୁସରଣ କରି ପ୍ରକୃତ ସମାଜସେବୀ ଭାବରେ ସଫଳ ହୋଇଥିଲେ, ଏ ପବିତ୍ର ଦିବସରେ ସେହି ଆଦର୍ଶ, ନୀତି, ନିଷ୍ଠା, ତ୍ୟାଗ ଓ ପନ୍ଥାର ଚର୍ଚ୍ଚା କରି ଆମେ ବୁଝାଇ ଦେବୁ ଯେ, ସମାଜସେବୀମାନଙ୍କର ପ୍ରକୃତ କର୍ତ୍ତବ୍ୟ କଣ ? ସାଧନା କଣ ?

ମାଧବୀର ଏହି ଯୁକ୍ତି ଶୁଣି ଦିଗମ୍ବର ରାଗରେ ଗର୍ଜନ କରି କହିଲା, ତୁମେ ମୋ ଭଳି ଜଣେ ଆଜୀବନ ସମାଜସେବୀର ପତ୍ନୀ ହୋଇ ଯଦି ଏ କଥା କହିବ, ବାହାର ଲୋକ ଆଉ କଣ ନ କହିବେ ?

ମିନତି ଖଗ୍‌କୁ ପିଠି ଦେଖାଇ ତାର ଧୂଆ ମୁକୁଳା ମୁଣ୍ଡବାଳ ଶୁଖେଇ ଶୁଖେଇ ଠିଆ ହୋଇଥିଲା । ବାପାଙ୍କର କଥା ଶୁଣି ଅନାସକ୍ତ ଭାବରେ କଅଁ ଲେଇ କହିଲା, "ବାପା, ତୁମେ ଅକାରଣରେ ଉପରେ ପକେଇ ହୋଇ ରାଗିଯାଉଛ କାହିଁକି ? ବୋଉ ମୋଟେ ଭୁଲ କହି ନାହିଁ । ତୁମେ ହୁଅ କି ଯିଏ ହୁଅନ୍ତୁ, ଏ ଦେଶରେ ଆଜି ଶହ ଶହ ନେତା, ସମାଜସେବୀ ଥାଉଁ ଥାଉଁ ମଧ୍ୟ ସ୍ୱାଧୀନ ଉତ୍କଳର ଗାଁ ଗଣ୍ଡା, ଗଳି କନ୍ଦିରେ ରୁଗ୍‌ଣ, କାଙ୍ଗାଳ, ଦରିଦ୍ର ମଣିଷ ଅସହାୟ ଜଟାୟୁ ପରି ବିକଳରେ ରାମ ରାମ ଚିତ୍କାର କରୁଛି କାହିଁକି ? ମୁଁ ମାନୁଛି, ତୁମେମାନେ ବେପାର କରି, ବିଦେଶରୁ ଋଣ ଆଣି, ଭିକ୍ଷା ମାଗି ଏ ଦେଶର ଢେର ଉନ୍ନତି କରେଇଛ । କୋଠାବାଡ଼ି, କଳକାରଖାନା, ରାସ୍ତାଘାଟ, କୂଅ, ପୋଖରୀ, ମଟରଗାଡ଼ି ଅସଂଖ୍ୟ କରେଇଛ । କିନ୍ତୁ ଗୋଟିଏ କଥା, ଦେଶରେ ଯେଉଁମାନେ ତଳେ ପଡ଼ି ରହିଥିଲେ ଓ ଅଛନ୍ତି, ସେମାନଙ୍କ ଭିତରେ ଓ ତାଙ୍କର ଚରିଆଡ଼େ ମାନବିକତାର ବିକାଶ ହୋଇଛି କି ? ଏ ଦେଶର ନେତୃତ୍ୱ ଆଜି ଯେଉଁ ନିରୀହ ଅଜ୍ଞ ଦରିଦ୍ର ଗାଁ ଲୋକଙ୍କ ଉନ୍ନତି ପାଇଁ କାମ କରୁଛି, ତଳ ସ୍ତରରେ ସେହି ଲୋକମାନଙ୍କ ପ୍ରତି ଯେଉଁ ଅନ୍ୟାୟ, ଅନୀତି କରାଯାଉଛି, ତା ବିରୁଦ୍ଧରେ ଲୋକଙ୍କ ପକ୍ଷରୁ ଯଥାର୍ଥ ଭାବରେ ଲଢ଼ିବାକୁ ପ୍ରକୃତରେ ଆଜି ସମାଜସେବୀମାନେ ଆନ୍ତରିକ ଉଦ୍ୟମ କରୁଛନ୍ତି କି ?

ତୁମେ ନିଜକୁ ପଚାର ବାପା, ତୁମେ ଯେତେବେଳେ ଶିଳ୍ପ ଅଞ୍ଚଳର ନିଷ୍ପେଷିତ, ଶୋଷିତ ଶ୍ରମିକମାନଙ୍କ ମଙ୍ଗଳ ପାଇଁ ଆନ୍ଦୋଳନ ଆରମ୍ଭ କଲ, ତାର ପରିଣତି କଣ ହେଲା ? ଶେଷରେ ତୁମେଇ ତ ଶିଳ୍ପପତିମାନଙ୍କ ପାଲରେ ପଡ଼ିଗଲ । ରାତାରାତି ଟଙ୍କା କେଇ ହଜାର ତୁମ ପକେଟରେ ଗୁଞ୍ଜି ଦେଲେ ବୋଲି ସଂକଟମୟ

ପରସ୍ଥିତିରେ ଶ୍ରମିକମାନଙ୍କର ଗଳା କାଟିଲ । ତାଙ୍କୁ ଏଣୁ ତେଣୁ କହି ଧମକାଇ ଧାପେଇ ବିନା ସର୍ତ୍ତରେ ଧର୍ମଘଟ ଭଙ୍ଗେଇ ଦେଲ । ଗରିବ ଶ୍ରମିକମାନଙ୍କର ଲକ୍ଷ ଲକ୍ଷ ଟଙ୍କା କ୍ଷତି ହେଲା । ଏହା ତ ହେଲା ତୁମ ଭଳି ନେତାମାନଙ୍କର ଜନହିତକର କାର୍ଯ୍ୟ । ଏ କ୍ଷେତ୍ରରେ ଗୋପବନ୍ଧୁଙ୍କ ଭଳି କର୍ତ୍ତବ୍ୟନିଷ୍ଠ ତ୍ୟାଗୀ ପୁରୁଷମାନଙ୍କ ଆଦର୍ଶ ନୀତି ଓ କର୍ମଧାରାର ଚର୍ଚ୍ଚା ଦ୍ୱାରା ଉପସ୍ଥିତ ସମାଜସେବୀମାନଙ୍କୁ ପ୍ରଭାବିତ କରିବା ଛଡ଼ା ଆଉ କି ଉପାୟ ଅଛି ?"

'ମିନୁ !'— ଦିଗମ୍ବର କ୍ରୋଧାନ୍ଧ ହୋଇ କହିଲା, "ତୁ ମୋର ଝିଅ ନୋହୁଁ !"

ମିନତି ପୁନର୍ବାର ଶାନ୍ତ କଣ୍ଠରେ ଉତ୍ତର ଦେଲା— ତୁମେ ମୋତେ ଅସ୍ୱୀକାର କରିପାର । ରାଜନୈତିକ ଲକ୍ଷ୍ୟହାସଲ ପାଇଁ କୌଣସି କୌଣସି ଦଳର ଲୋକ ନିଜ ପୁଅ, ଭାଇ, ଝିଅ, ବୋହୂଙ୍କୁ ହତ୍ୟା ବି କରି ପାରନ୍ତି ବୋଲି ମୁଁ ଶୁଣିଛି । ତଥାପି ମୁଁ କୌଣସି ଅନ୍ୟାୟ ଅନୀତି ଓ ଆଚରଣ ହୀନତାକୁ ମାନି ନେଇ ନ ପାରେ ।

'ଠିକ କଥା'— ମାଧବୀ କହିଲା— "ଆଜିର ରାଜନୈତିକ ଅପରାଧ, ଲୋକସେବା କାର୍ଯ୍ୟରେ ଦୁର୍ନୀତିର ବିରୋଧ ପାଇଁ ଗୋପବନ୍ଧୁଙ୍କ ଭଳି ନେତାମାନଙ୍କ ନିଷ୍କଳଙ୍କ ଜୀବନଧାରାର ସ୍ମରଣ, ପୂଜା ଓ ପ୍ରଚାର ନିତାନ୍ତ ଜରୁରୀ । ସେଥିପାଇଁ ଆମେ କହୁଛୁ, ଏ ଗାଁରେ ଆଜି ଗୋପବନ୍ଧୁଙ୍କ ଶ୍ରାଦ୍ଧଦିବସ ପାଳନ କରାଯାଉ ।"

ଦିଗମ୍ବର ଏଠି ମଧ୍ୟ ପରାସ୍ତ ହେଲା । ସେ କେବେ କଳ୍ପନା କରି ନ ଥିଲା ଯେ ମାଧବୀ ଭଳି ଏତେ ଅନୁରକ୍ତା ସ୍ତ୍ରୀ, ମିନତି ଭଳି ଶାନ୍ତଶିଷ୍ଟ ସରଳା ଝିଅ ସହିତ ତାର ଦିନେ ଅସମୟରେ ଏପରି ଉତ୍କଟ ମତଭେଦ ହେବ । ହଠାତ୍ ଏବେ ଦସ୍ୟୁ ରତ୍ନାକରର

କଥା ତାର ମନେ ପଡ଼ିଗଲା । ବାଟ ଜଗି ପଥିକମାନଙ୍କ ମୁଣ୍ଡ ପିଟି ଧନ-ସମ୍ପତ୍ତି ଜୁଟାଇ କରି ସେ ପ୍ରତିଦିନ କୁଟୁମ୍ବ ପୋଷୁଥିଲା । ହେଲେ କୁଟୁମ୍ବର କେହିହେଲେ ତାର ସେହି କଲା ପାପରେ ଭାଗୀ ହେବାକୁ ରାଜି ହେଲେ ନାହିଁ । ସେ ଭାବିଲା, ଆଜି ଏହି ଘରେ ତାହାହିଁ ହେଲା ।

ଦିଗମ୍ବର ଆଉ କିଛି ନ କହି ଧୀରେ ଧୀରେ ବାହାରକୁ ଚାଲିଗଲା । ମନ ଭିତରେ ଘୋର ବିତୃଷ୍ଣା । ସେ ଆଉ ପଛକୁ ଅନାଇଲା ନାହିଁ ମଧ୍ୟ । ବିଲ, ବଣ, ନଈ, ଗାଁ, ହାଟପଦା, ଗୋରୁଗୋଠ ଗୋଟିଏ ପରେ ଗୋଟିଏ ଡେଇଁ ଡେଇଁ ସାରାଦିନ ଧରି ଚାଲିଲା । ବାଟ ଘାଟରେ ଚିହ୍ନା, ଅଚିହ୍ନା ଯିଏ ଯେଉଁଠି ଦେଖିଲେ, ଆଡ଼େଇ ହୋଇଗଲେ । କେହି କେହି କାବା ହୋଇ ତାର ପଛକୁ ଅନେଇ ରହି ଭାବିଲେ । ବାବୁ ଆଜି ଏକା ଏକା ମୁହଁଟାକୁ ଏପରି ଭୃକୁଣ୍ଡା କରି ଚାଲିଛନ୍ତି କଣ ? ଜିପ୍ ନାହିଁ, ସାଇକଲ ନାହିଁ, ସାଙ୍ଗରେ ଅଫିସର ନାହାନ୍ତି କି ମନ୍ତ୍ରୀ ନାହାନ୍ତି କି ନିକମା ଚାକରମାନେ ନାହାନ୍ତି । କଥା କଣ ?— କେହି କିଛି ଠଉରେଇ ପାରିଲେ ନାହିଁ ।

ବେଳ ରତ ରତ ବେଳକୁ ନୂଆ ହୋଇ ବସିଥିବା ପଞ୍ଚାୟତ ଶିଳ୍ପ କାରଖାନା ସେପାଖ ଆମ୍ବ ତୋଟାରେ ବିପୁଳ ଜନସମାଗମ ଦେଖି ସେ ଅଟକିଗଲା । ଲାଉଡ଼ସ୍ପିକର ମାଧ୍ୟମରେ କୌଣସି ସୁପରିଚିତ ନେତାଙ୍କର ଗୁରୁଗମ୍ଭୀର ଭାଷଣ ମଧ୍ୟ ତାର କାନରେ ପଡ଼ିଲା । ନେତା ମନ ଟାଣି ଓଟାରି ହେଲା ।

ବିରାଟ ସାଧାରଣ ସଭା ।

ଉତ୍କଳମଣିଙ୍କ ଶ୍ରାଦ୍ଧସଭା ।

ବକ୍ତୃତା ଚାଲିଛି— ନବୀନ ଉତ୍କଳର ସୁଯୋଗ୍ୟ ବିଧାତା ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଶ୍ରାଦ୍ଧ ଦିବସରେ ତାଙ୍କର ତ୍ୟାଗ, ସେବା ଓ କର୍ତ୍ତବ୍ୟପରାୟଣତା ଆଖି ଆଗରେ ଝଲସି ଉଠେ । ମନେହୁଏ,

ଆଜି ମଧ୍ୟ ସେ ଆମ୍ଭମାନଙ୍କ ସହିତ ଅହର୍ନିଶି ଉପସ୍ଥିତ ରହି ଦେଶ ନିର୍ମାଣ କାର୍ଯ୍ୟରେ ବୁଦ୍ଧି ବତାଉ ଅଛନ୍ତି । ଏ ଦେଶକୁ, ଏ ଜାତିକୁ ଆଗେଇ ନେବାପାଇଁ ସେ ଆମ୍ଭମାନଙ୍କର ହାତ ଧରି ଆଗଭର ହୋଇ ଚାହିଁଛନ୍ତି ! ଆଜି ମଧ୍ୟ ଦରିଦ୍ରର ଦୁଃଖ ଦେଖିଲେ ତାଙ୍କ ଆଖିରୁ ଲୁହ ଝରି ପଡ଼ୁଛି······

୪୫ ମିନିଟ ପରେ ବକ୍ତା ଶ୍ରଦ୍ଧାଞ୍ଜଳି ଅର୍ପଣ କରିସାରି ବସି ପଡ଼ିଲେ । ସଭାପତି କହିଲେ, ଆଉ କେହି ଯଦି କିଛି କହିବାକୁ ଚାହାନ୍ତି, କହନ୍ତୁ ।

ଦିଗମ୍ବର ସଭାମଞ୍ଚ ଉପରକୁ ଉଠିଲା ।

"ଗୋପବନ୍ଧୁଙ୍କ ଶ୍ରାଦ୍ଧସଭାରେ ତାଙ୍କର ଆଦର୍ଶ-ଆଖିରେ ଧୂଳି ପକେଇ ଆମେ ତାଙ୍କର ସମଧର୍ମିମାନେ ଯଦି ଏପରି ଖସିଯିବାର ଚେଷ୍ଟା କରୁଁ, ଗୋପବନ୍ଧୁ ବାବୁ ସାମନାକୁ ଆସି ମନା କରିବେ ନାହିଁ । କିନ୍ତୁ ମୁଁ ଆଜି ସ୍ପଷ୍ଟ ଅନୁଭବ କରୁଛି, ଏପରି କରିବା ଦ୍ୱାରା ଆମେ ଆମର ଜନ୍ମ ଓ ଜୀବନକୁ ଅସାର୍ଥକ କରି ପକାଉଛୁ— ଧ୍ୱଂସ କରି ଦେଉଛୁ ।

ଦେଶର ସେବାକ୍ଷେତ୍ରରେ ଆମ୍ଭେମାନେ ଗୋପବନ୍ଧୁଙ୍କର ଆଦର୍ଶକୁ ପ୍ରକୃତରେ ଯଦି ଅନୁସରଣ ନ କରୁ, ତା ହେଲେ ଏ ଶ୍ରାଦ୍ଧସଭାର କୌଣସି ମୂଲ୍ୟ ନାହିଁ । ଚିରସ୍ମରଣୀୟ ଏହି ଜାତୀୟ ପର୍ବ ଅବସରରେ ମୁଁ ନିର୍ଭିକ ଭାବରେ ପ୍ରକାଶ କରିବାକୁ ଚାହେଁ ଯେ ସକଳ ପ୍ରକାର ଆବିଳତା ଭିତରେ ନିଜକୁ ବୁଡ଼େଇ ଗୋପବନ୍ଧୁଙ୍କ ପ୍ରଶଂସାର ସ୍ରୋତ ତଳେ ଆପଣା ଆପଣାକୁ ଖସେଇ ନେବାର ଯେଉଁ ଉଦ୍ୟମ ଆମେ ସମାଜ ସେବକ, ରାଜନୈତିକ ନେତାମାନେ କରି ଆସୁଛୁ, ମୁଁ ଦେଖୁଛି— ତାହାଦ୍ୱାରା ଆମେ ଆମର ପାଦତଳେ ଗାତ ଖୋଳୁଛୁ । ସେ ଗାତ ପୁଣି ଏପରି ଗାତ, ତା ଭିତରେ

ପଡ଼ିଗଲେ ହାତଗୋଡ଼ ଚୂନା ହୋଇଯିବ, ସତ୍ତ୍ୱ ମିଳିବ ନାହିଁ ଏବଂ ପଡ଼ିଯିବାର ଯଥେଷ୍ଟ ସମ୍ଭାବନା ବି ରହିଛି ।

ପ୍ରକୃତରେ ଯଦି ଏ ଦେଶବାସୀଙ୍କର ଗୋପବନ୍ଧୁଙ୍କ ଆଦର୍ଶ ତ୍ୟାଗ, ସେବା ପ୍ରତି ଶ୍ରଦ୍ଧା, ସମ୍ମାନ ଓ ବିଶ୍ୱାସ ରହିଛି, ତା ହେଲେ ମୁଁ ଆହ୍ୱାନ କରିବି ଯେ, ଗୋପବାବୁଙ୍କ ଶ୍ରାଦ୍ଧ ସଭାରେ ସ୍ଥାନୀୟ ସମାଜସେବକମାନେ, ଆଜିର କ୍ଷମତାଶାଳୀ ରାଜନୈତିକ ନେତା-ମାନେ ଛାତିରେ ହାତ ରଖି କହନ୍ତୁ, ସେମାନେ ଗୋପବନ୍ଧୁଙ୍କ ଆଦର୍ଶ ଅନୁସାରେ କାମ କରିବେ । ତାଙ୍କର ପବିତ୍ର ଇଚ୍ଛା ଅନୁସାରେ ଏ ଜାତିକୁ ଗଢ଼ିବେ, ଦେଶକୁ ଆଗେଇ ନେବେ । ଗୋପବନ୍ଧୁଙ୍କ ଆଦର୍ଶ ଓ ଇଚ୍ଛା ସେମାନେ ବ୍ୟାଖ୍ୟାନ କରନ୍ତୁ ଓ ସେ ଅନୁସାରେ ସେମାନେ କଣ କଣ କରିଛନ୍ତି ଓ କରିବେ ପରିଷ୍କାର କରି କହନ୍ତୁ ।

ମୋ ଭଳି ତଥାକଥିତ ନେତାମାନେ, ଯେଉଁମାନେ କି କେଳା ନାଗେଶ୍ୱର ଫୁଙ୍କି ଗୁଡ଼ାଏ ସାପଙ୍କୁ ନଚେଇଲା ଭଳି ଗୋଟାଏ ସ୍ଲୋଗାନ ସୃଷ୍ଟି କରି ଗୁଡ଼ାଏ ଲୋକଙ୍କୁ ଏ ପାଖ ସେ ପାଖ କରି ନଚାନ୍ତି, ମନସାଦ ମେଣ୍ଟାନ୍ତି, କ୍ଷମତା ପ୍ରତିପତ୍ତି ହାସଲ କରି ଜନଶକ୍ତିକୁ ଆପଣା କଳ୍ପନାର ବିଳାସ ସାମଗ୍ରୀ କରି ବ୍ୟବହାର କରନ୍ତି, ସେମାନେ ସଭାରେ ଜନତାର ମନ ନେବାପାଇଁ, ଦେଖାଇ ହେବାପାଇଁ ଗୋପବନ୍ଧୁଙ୍କ ଭଳି ପୁଣ୍ୟାତ୍ମା ମହାପୁରୁଷଙ୍କର ପ୍ରଶଂସା କରି ବକ୍ତୃତା ଦେବାର କୌଣସି ଅର୍ଥ ନାହିଁ ।

ମୋର ମନେହୁଏ, ଏହାଦ୍ୱାରା—ଏପରି କରିବା ଦ୍ୱାରା ଏ ଜାତି ତାର ମୂଳ ନିର୍ମାତାଙ୍କୁ ଖଟେଇ ହେଉଛି, ପାପ ଅର୍ଜନ କରୁଛି ।

ଆଶାକରେ, ଜନତା ଓ ଜନନେତାମାନେ ମୋ କଥାର ତାତ୍ପର୍ଯ୍ୟ ବୁଝିପାରିଥିବେ ଓ ସେ ଅନୁସାରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ କରିବେ ।"

ଦିଗମ୍ବର ଉତ୍ତେଜିତ ହୋଇ ଏତିକି କହିସାରି ବସିପଡ଼ିଲା ।

ସଭାକାର୍ଯ୍ୟ ଆହୁରି ବାକିଥିଲା । କିନ୍ତୁ ଦେଖାଗଲା, ଆଉ କୌଣସି ନେତା ବକ୍ତୃତା ଦେବାକୁ ସଭାମଞ୍ଚ ଉପରକୁ ଉଠିଲେ ନାହିଁ । ବିରାଟ ଜନତା ବସି ବସି ବିରକ୍ତ ହୋଇ ଗୋଟିଏ ଗୋଟିଏ ହୋଇ ଉଠିଲେ । ଅନ୍ଧାର ହେବା ପୂର୍ବରୁ ସଭା ସରିଗଲା । ଆଉ ଆଲୁଅ ଜାଳିବା ଦରକାର ହେଲାନାହିଁ । ଶେଷକୁ ସଭାର ଉଦ୍ୟୋକ୍ତାମାନେ ଦେଖିଲେ, ଦୁଇ ଟିଣ ଧଳା କିରାସିନ ଖର୍ଚ୍ଚ ନ ହୋଇ ବଳି ପଡ଼ିଛି ।

ଏଁ ? ବାରଟା ବାଜି ଗଲାଣି ଯେ! ଜିତେନ୍ଦ୍ରସୁ ଗାଲରୁ ହାତ ଉଠାଇ ଆଙ୍ଗୁଠି ଅଗରେ ମୁଣ୍ଡ କୁଣ୍ଡେଇଲା । ସତେତ, ସେ ପାଗଳ ହୋଇ ଗଲାଣି ନା କଣ! ସକାଳ ଛ ଘଣ୍ଟାରୁ କପେ ଗୃ ପକେଇ-ଦେଇ ବସି ବସି ଭାବୁଛି ଯେ ଭାବୁଛି । ଅର୍ଦ୍ଧ ଛ ଘଣ୍ଟା ହେଲା ଏ ଫସାରଟା କଣ ହେଲାଣି, ତାକୁ ମାଲୁମ ନାହିଁ! ଯା—

ଜିତେନ୍ଦ୍ରସୁ ମୁଣ୍ଡ ଟେକିଲା । ଇସ୍! ସାମନା କାନ୍ଥ ଦର୍ପଣରେ ଝଲସି ଉଠିଲା ତାର ମୁଖମଣ୍ଡଳର ଅଦ୍ଭୁତ ଗମ୍ଭୀର ଛାଇ! ସେ କାହିଁକି ଭାବୁଛି ଏତେ? ଭୂଲତା ଉପରେ ଧାର ଧାର ଗାର ଫୁଟିଲାଣି । କପାଳରେ ଝାଳ! କେମିତି ଅସହାୟ ଦିଶୁଛି ତାର ଦମ୍ଭିଲା ମୁହଁଟି! କ୍ଷଣିକ ପାଇଁ ଲଜ୍ଜିତ ହେଲା ଜିତେନ୍ଦ୍ରସୁ!

ପତ୍ନୀ ଲୀଳା ତମ ତମ ହୋଇ ଆସି କହିଲା, ଆସି ଦରବୁଢ଼ା ହେଲଣି । ସେହି ପିଲା ଖୋଇ ଯାଉନାହିଁ ନା? ଗାଧୁଆ ଘରେ ପାଣି ଥଣ୍ଡା ହେଲାଣି । ଖିଆ ପିଆ ସରିବ ନାହିଁ କି? କଣ ଏତେ ଭାବନା କରାହେଉଛି?

ଜତେନ୍ଦ୍ରସୂ ଚମକ ପଡ଼ିଲା । "ଏଁ, ନାଇଁ ତ, ଭାବବ କାହିଁକ ? ତପସ୍ୟା କରୁଛି । ବୁଦ୍ଧଦେବ ଠିକ୍ ଏମିତ ତପସ୍ୟା କର କର ନବାଣର ପନ୍ଥା ପାଇଥିଲେ ।"

"ଆଉ ତମେ ପାଗଳ ହେବାର ପନ୍ଥା ଖୋଜୁଛ ? ଆସ ଆସ ।"

ଲୀଳା ଫେରଗଲା ।

ଜତେନ୍ଦ୍ରସୂ ଚାହିଁ ରହିଲା, ଲୀଳାର ପଛ ପଟକୁ । ଭାବିଲା, ପତ୍ନୀ—ପତ ! ଦୁଇଟି ଜୀବନ ପ୍ରବାହ ଦୁହିଁଙ୍କ ନକଟରେ ବନ୍ଧା, ଚରଦନ ପାଇଁ ! ପୁରୁଷତ୍ୱ ଓ ନାରୀତ୍ୱର ମିଶାମିଶି ବହୁଳତାର ସ୍ୱାଭାବକ ଦୁଷ୍ଟ ବକାଶକୁ ଦବେଇ ଦେବାପାଇଁ ସମାଜର ଏ ଏକ ବନ୍ଧନ ! ଆକଟ ! କ କୂଟମାଡ ପ୍ରୟୋଗ ନ କରଛନ୍ତ, ସେ କାଳର ସମାଜ ନାୟକମାନେ ! ସ୍ୱାର୍ଥପର ମଣିଷର ଚରମ ସ୍ୱାର୍ଥପରତା ଏହାଠାରୁ ଆଉ ଅଧିକ କଣ ହୋଇପାରେ ?

ଠିକଏ ରହି ପୁଣି ସେ ଭାବଲା, ନା ଗୋଟାଏ ରଫା କରବାକୁ ହେବ । ବେଳ ଚାଲଯାଉଛି ଯେ । ଜନମ ସରଯାଉଛି । ଏ ଜନମରେ ଯଦ କାମ ନ ସରବ, ପୁଣି ଗୋଟାଏ ଜନମ ଧାଣ୍ଡି ହେବାକୁ ପଡ଼ବ ।

ଲୀଳାର ଉପରେ ଜତେନ୍ଦ୍ରସୂ ଗାଧୁଆ ଘରକୁ ଗଲା । ଖାଇ ପିଇ ପୁଣି ଏକ ପ୍ରକାର ଧ୍ୟାନମଗ୍ନ ହେଲା । ଅନେକ ଭାବଲା । କପାଳର ଚମଡ଼ାକୁ କୁଞ୍ଚିତ କର, ମୁଣ୍ଡର ବାଳକୁ ଟାଣି, ଓଠାର· ବହୁତ ଭାବଲା । ସିଦ୍ଧାନ୍ତ କଲା, ଗୋଟାଏ ଚଠି ଲେଖି କର୍ତ୍ତବ୍ୟ ଶେଷ କରବ ।

ଜତେନ୍ଦ୍ରସୂ ଚଠି ଲେଖିଲା—

ତା: ୨୮—୯—୧୯୬୨

କଲ୍ୟାଣୀ,

ଆଧୁନିକ ସଭ୍ୟତାର ଚରମ ବିକାଶ ବେଳେ ତମେ ଜନ୍ମ ହୋଇଛ । ଶିକ୍ଷିତ ସମାଜରେ ୨୪ ବର୍ଷ ଅତିବାହିତ କରି, ବିପୁଳ ଅଭିଜ୍ଞତାରେ ବୁଦ୍ଧି ଓ ବିବେକକୁ ସମୃଦ୍ଧ କରିଛ । ତେଣୁ କେବଳ ଜଣେ ସୁଶିକ୍ଷିତା, ବୁଦ୍ଧିମତୀ, ସୁନ୍ଦରୀ ଝିଅ ଭାବରେ ନୁହେଁ, ବିଂଶ ଶତାବ୍ଦୀର ନାରୀ ସଭ୍ୟତା ଓ ଜାଗ୍ରତ ନାରୀ ଜାତିର ଏକ ପରିପୂର୍ଣ୍ଣ ପ୍ରତୀକ ଭାବରେ ତମ ନିକଟକୁ ମୁଁ ଏ ଚିଠି ଲେଖୁଛି ।

ଆହୁରି ଗୋଟିଏ ବଡ଼ କାରଣ ଅଛି । ମୁଁ ମାନୁଛି, ମାନ୍ଦ୍ରାଜର ଦାଣ୍ଡି ବାଟରେ ତମଠୁଁ ବଳି ସୁନ୍ଦରୀ, ଅଧିକ ଶିକ୍ଷିତା, ଅଧିକ ବୁଦ୍ଧିମତୀ ଅନେକ ଝିଅ ବୁଲୁଛନ୍ତି । ତୁମଠାରୁ ଆହୁରି ଭଲକରି ମୁଁ ସେମାନଙ୍କୁ ଜାଣିଛି । ସେମାନେବି ମୋତେ ବେଶ୍ ଭଲ ଲାଗିଛନ୍ତି । କିନ୍ତୁ ସେମାନଙ୍କ ଭିତରୁ ଅନ୍ୟ କାହାଠାକୁ ଏପରି ଚିଠି ନ ଲେଖି ତୁମଠାକୁ ଲେଖୁଛି କାହିଁକି ? ଭାବି ଭାବି ଠିକ୍ କରି ପାରିବ ? ନା— ନିଜର ଭାଗ୍ୟ ଜାଣିବା ନିମନ୍ତେ ମଣିଷ ଚେଷ୍ଟା କରି ଯେମିତି ବିଫଳ ହୁଏ, ତମେ ସେମିତି ବିଫଳ ହେବ । ତେଣୁ କହି ଦେଉଛି, ଶୁଣ—ସବୁ ଫୁଲ ସୁନ୍ଦର ହୋଇପାରେ । ସବୁ ଫୁଲରେ ବାସନା ଥାଇପାରେ । କିନ୍ତୁ ତୁଳସୀ ଜଟର ବାସନା, ଆଘ୍ରାଣରେ ଉପକାରିତା, ଅନ୍ୟ ଫୁଲଠୁ ମିଳିବ କେମିତି ? ସେମାନେ ଗୋଲାପ, ମଲ୍ଲି, ଚମ୍ପା ହୋଇ ପାରନ୍ତି । କିନ୍ତୁ ମୁଁ ଯେ ସାଧକ, ତୁଳସୀ ଛଡ଼ା ଅନ୍ୟଥିରେ ଲୋଭ ଜନ୍ମିବ କେମିତି ? ତମେ କଳା ତୁଳସୀର ଜଟ ! ତମେ ଓଡ଼ିଆଣି !

ତମେ ତରୁଣୀ, ତମେ ନାରୀ—କିନ୍ତୁ ତମେ ମାୟାବିନୀ ନୁହଁ, ତମେ କୁହୁକିନୀ ନୁହଁ—ଏ କଥା ମୋର ଅନ୍ତର କହୁଛି ବୋଲି

ଲେଖିଲେ ବି ଠିକ୍ ହେବ ନାହିଁ । କାରଣ ଅନ୍ତର ଭିତରୁ ଆଉ ଜଣେ କିଏ ମନମତାଣିଆ ବଂଶୀ ତାନରେ ଏ କଥା ଥରକୁ ଥର ସୂଚାଇ ଦେଲା ପରି ମୋତେ ଶୁଭୁଛି ।

ତମକୁ ମୁଁ ଠେକାଠେକି କରି ମାରି ନେବାକୁ ବସିଛି ବୋଲି ଭାବୁଛ କି ? ସେମିତି ଗ୍ରେଟ କଥା ମନକୁ ନେବନି । ମୁଁ ଏ ଚିଠି କୌଣସି ସରସ ପ୍ରତ୍ୟୁତ୍ତର କିମ୍ବା ପ୍ରତିଦାନ ଆଶାରେ ଲେଖୁନି । ଯଦି ଏ ଚିଠି ଲେଖିବା ଦ୍ଵାରା ମୋ ଜୀବନର ଆକାଂକ୍ଷା କିଞ୍ଚିତ ମାତ୍ରାରେ ସାର୍ଥକ ହୁଏ, ଯଥେଷ୍ଟ ହେବ । ତା ଛଡ଼ା ମୋର ଅନ୍ୟ ଇଚ୍ଛା ନାହିଁ ।

ଗୋଟିଏ ମଜା କଥା କହିବି, ଶୁଣିବ ? ଶୁଣ । ତମେ ତ ମହା ଗପୁଡ଼ି । ଏଥିରୁ ତମକୁ ବହୁତ ବହୁତ ମସଲା ମିଳିଯିବ । ସାରାଜୀବନ ଧରି ଗପି ପାରିବ । ଧରିନିଅ, ଏଇଟା ଖାଲି ଗପଟାଏ !

୧୯୨୯ ଶେଷଭାଗ କି ୧୯୩୦ ପାଖାପାଖି ସମୟ । ପରାଧୀନ ଭାରତର ନେତାମାନେ ସ୍ଵରାଜ ସ୍ଵପ୍ନ ଦେଖୁଥିଲେ । ଇଂରେଜ ସରକାର ଭାରତର ସମ୍ପତ୍ତି ଶୋଷଣରେ ବ୍ୟସ୍ତ । ଦେଶର ଆଭ୍ୟନ୍ତରିଣ ଉନ୍ନତି କଥା ଚିନ୍ତା କରୁଛି କିଏ ? ସେତେବେଳକୁ ଆଜିର ଓଡ଼ିଶା ପ୍ରଦେଶର ନା ଗନ୍ଧ ନ ଥିଲା କହିଲେ ଚଳେ । ବିପୁଳ ପ୍ରାକୃତିକ ବିଭବପୂର୍ଣ୍ଣ କୋରାପୁଟ ଜିଲ୍ଲାଟା ମାନ୍ଦ୍ରାଜ ପ୍ରଦେଶରେ ରହି ଯାଇଥିଲା । ଏଠିକାର ଓଡ଼ିଆ ଲୋକଗୁଡ଼ାକ ବିଦେଶୀ ବେପାରୀଙ୍କ ଗର୍ଜନ ଘାତରେ ଦଳି ଚକଟି ହେଉଥିଲେ । ଓଡ଼ିଆମାନଙ୍କର ଏଠି କିଛି ଅସ୍ତିତ୍ଵ ନ ଥିଲା । ତଥାପି ସେମାନେ କୌଣସିମତେ ବଞ୍ଚି ରହୁଥିଲେ । ଦୂର ଦୂରାନ୍ତର ଗାଁ ଗଣ୍ଡାରେ ଜମି ଖଣ୍ଡେ ଖଣ୍ଡେ ଆବରି ଗୁଜୁରାଣ ମେଣ୍ଟାଉ ଥିଲେ । ଆପଣା ଭାଷା, ସଂସ୍କୃତି ଭୁଲି ଯାଇଥିଲେ ।

ଏହି ପରିସ୍ଥିତିରେ ନୀଳାଚଳ ବହାଦୂର ଭକ୍ତର ଜନ୍ମ ହୋଇଥିଲା, ଆଦିବାସୀ ଅଧ୍ୟୁଷିତ ଏକ ନିପଟ ମଫସଲରେ, ଏକ ଗରିବ ଓଡ଼ିଆ ଘରେ । ବାପା ତାର ଅତ୍ୟନ୍ତ ଅସହାୟ, ବାପଛେଉଣ୍ଡ, ନିର୍ଧନ, ସଖା ସହୋଦର ବିହୀନ !

୧୯୩୬ରେ କୋରାପୁଟ ଜିଲ୍ଲା ଓଡ଼ିଶାରେ ମିଶିଲା । ଓଡ଼ିଆମାନେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ସାହସ କଲେ । କେଉଁଠି କେଉଁଠି ଓଡ଼ିଆ ପ୍ରାଥମିକ ସ୍କୁଲ ଗୋଟିଏ ଲେଖେ ସରକାର ବସେଇଲେ ।

ସ୍ୱାଧୀନତା ଆନ୍ଦୋଳନ ତେଜି ଉଠିଲା । ବ୍ରିଟିଶ ବିରୁଦ୍ଧରେ ଗାଁ ଗଣ୍ଡାର ଲୋକେ ମାତିଗଲେ ।

ନୀଳାଚଳ ଗାଁ ଇସ୍କୁଲରେ ପାଠ ପଢ଼ିଲା ।

ନୀଳାଚଳର ପିଲାଦିନଟୁକ କେମିତି କଟୁଥିଲା ଶୁଣିବ ? ଶୁଣିଥାଅ । ତା ନ ହେଲେ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ, ପରାଧୀନ ଭାରତର ଶେଷ ମୁହୂର୍ତ୍ତରେ, ଓଡ଼ିଶା ପ୍ରଦେଶ ଗଠିତ ହେବାର ଅବ୍ୟବହିତ ପୂର୍ବରୁ ଏ ଦେଶରେ ମଣିଷ ଜୀବନ କେଉଁ ସ୍ତରରେ ଥିଲା,.ଜାଣି ପାରିବନି । ତମେ ଆଜି ଆଧୁନିକ ସଭ୍ୟତାର ଚରମ ଅସ୍ଫାଳନ କୋଳରେ ଝୁଲି ଝୁଲି ନିଜ ବଂଶଧରମାନଙ୍କୁ ବୁଝି ପାରିବନି । ମାନ୍ଦ୍ରାଜର ବିପୁଳ ବିଭବଶାଳୀ ସଭ୍ୟତା ଭିତରେ ଗୃହୀଜୀବନ ଯାପନ କରି ପଛକୁ ଅନାଇ ଜାଣିବନି ।

କଲ୍ୟାଣୀ, ତମେ ଟିକିଏ କଷ୍ଟକରି କଳ୍ପନା କରିବ କି ? ବିରାଟ ଉଡ଼ାଜାହାଜ ପଡ଼ିଆ, ଏକାଧିକ ବେତାର କେନ୍ଦ୍ର, ବହୁ ସିନାମା ହଲ, ଥିଏଟର ଘର, ରେଳ ଷ୍ଟେସନ, ଷ୍ଟୁଡ଼ିଓ, ଅସଂଖ୍ୟ ବସ୍, କାର୍, ଜିପ୍, ଟେକ୍ସି, ରିକ୍ସାର ଧାଁ ଦଉଡ଼; ମାଳ ମାଳ କୋଠା,

ବିଶ୍ୱ ବିଦ୍ୟାଳୟ, କଲେଜ, ଅସଂଖ୍ୟ ସ୍କୁଲ, ବିଭିନ୍ନ ବିଦ୍ୟାନୁଷ୍ଠାନ ଅଣନିଶ୍ୱାସି ହୋଇ ଅଗ୍ରସର ହେଉଥିବା ସହର ଜୀବନର କାନଫଟା ହୁଙ୍କାର ଭିତରେ ବଢ଼ି ତମେ ବହୁ ଭାଷାଭାଷୀଙ୍କ ମଧ୍ୟରେ ଆପଣା ଘରର ନିଗୁଞ୍ଚିଆ ଗାଁ ଜୀବନକୁ କଳ୍ପନା କରିବ କେମିତି ? ତଥାପି ଚେଷ୍ଟା କରି ଦେଖ ।

ଚାରିଆଡ଼େ ମାଳ ମାଳ ଉଚ୍ଚ ପାହାଡ଼, ଭୟଙ୍କର ଜଙ୍ଗଲ— ସଭ୍ୟ ସଂସାରଠାରୁ ପ୍ରାୟ ବିଚ୍ଛିନ୍ନ ସେ ଦେଶ । ରେଳ ସେଠିକି ଯାଇପାରେ ନାହିଁ । ଉଡ଼ାଜାହାଜ ଶୁଣିବାର କଥା । ବସ୍ ଦେଖିଲେ ତୀର୍ଥସ୍ଥାନ ଦେଖିଲା ପରି ଲାଗେ । (ନୀଳାଚଳର ପିଲାଦିନେ)

ଏପରି ଓଡ଼ିଶା ଦେଶର ମଫସଲ ଗାଁ—ସହର ଠାରୁ ବହୁ ଦୂରରେ । ରାସ୍ତା ଘାଟ ନାହିଁ । ଖରାଦିନେ ଆଣ୍ଠୁଏ ଧୂଳି, ବର୍ଷାଦିନେ ଅଣ୍ଟାଏ ପାଣିରେ ଜୀବନମୂର୍ଚ୍ଛା ଯାତାୟାତ କରିବାକୁ ପଡ଼େ । ଆଦିବାସୀ ବା ଆଦିମ ଓଡ଼ିଆ—ଅଧା ଲଙ୍ଗଳା, ଅଧା ଭୋକିଲା, ଅଧା ମଲା ମଣିଷର ସେ ଗାଁ । ସେଠି ନୀଳାଚଳ ବିଦ୍ୟାଶ୍ର ପାଠ ପଢ଼ୁଥିଲା ।

ଗରିବ ଘର । ଏ ଦେଶଟା ତ ଗରିବ । ମଣିଷ ଏଠି ଧନୀ ହେବ କେମିତି ? ଯୌବନ ଥିଲେ ସିନା କିଏ ଲୁଟି ନେବାର ଭୟ ଥାଏ, ଯଦି କୌଣସି ପ୍ରକାରେ ଯୌବନ ନଷ୍ଟ—ଆଉ ଲୁଟ୍‌ତରାଜ, ଶୋଷଣ କଷଣର ସମ୍ଭାବନା କାହିଁ ? ନିଜ ଆଖିରେ ଦେଖିଲା କଥା !

ଏ ଗାଁରେ ସମସ୍ତେ ଗରିବ । ସକାଳେ ଜଳଖିଆ ଖାଇବା ଏ ଗାଁର ଲୋକେ ଜାଣନ୍ତି ନାହିଁ । ନୀଳାଚଳ 'ଲୁଣ ଆମ୍ବୁଲ' ସାଙ୍ଗରେ ପଖାଳ ଖାଇ ସ୍କୁଲକୁ ଯାଏ । ଆହୁରି କେତେ ଆଦିବାସୀ ପିଲା ଛୁଆ ସାଙ୍ଗରେ ଯାଆନ୍ତି । ବାଟରେ ଏକ ଉଇହୁଙ୍କା ଉପରେ ଉଠିଥିବା

ସୁନ୍ଦର ସାହାଡ଼ା ଗଛମୂଳେ ମାଳାଚଳ ପଥରର ଗଣେଶ ବସାଇ ଥାଏ । ଫୁଲ ପତ୍ର ଦେଇ ପୂଜା କରେ । ଆଦିବାସୀ ପିଲାଏ ତା କଥା ଅନୁସାରେ ପ୍ରଣାମ କରନ୍ତି । ଗଣପତି ବରଦେଲେ ବୋଲି ସେ ଘୋଷଣା କରେ । 'ଏଥର ପାଠ ବୁଝିପିବ' — ଆନନ୍ଦରେ କୋଳାହଳ କରି ସମସ୍ତେ ଯାଆନ୍ତି ।

ଗାଁ ସେ ମୁଣ୍ଡରେ ମାଳାଚଳର ଅଜାଘର । ସେ ଘରଟି ଏ ଗାଁରେ ଏକ ଅଦ୍ଭୁତ ବ୍ୟତିକ୍ରମ । କେବଳ ଏଇ ଗାଁରେ ନୁହେଁ—ଆଖପାଖ ଶହେ ଦେଢ଼ଶ ଗାଁରେ ଏ ଘରଟି ଏକ ପ୍ରକାଣ୍ଡ ଘର । କୋଠାଘର ନ ହେଲେ ବି ବଡ଼ ବଡ଼ ବଖରା, ଉଞ୍ଚା ଉଞ୍ଚା କାନ୍ଥ, ଟିଣ ଛାତ, ବଡ଼ ବଡ଼ ଦୁଆରବନ୍ଧ ଓ କବାଟ—ତା ଭିତରେ ଟଙ୍କା, ସୁନା, ରୁପା, ପାଟ ପୀତାମ୍ବର ଥିବା ସିନ୍ଦୁକ ଥାକକୁ ଥାକ ଥୁଆ ।

ଗାଁ ଗଣ୍ଡାରେ ସମସ୍ତେ ତ ଗରିବ । ସ୍ବାଙ୍କର କେମିତି ଏତେ ସମ୍ପତ୍ତି ? କଥା ପଡ଼ିଲା ବୋଲି ଲେଖୁଛି । ଏ ଦେଶର ମଣିଷ ସିନା ଗରିବ, ହେଲେ ଏ ଦେଶର ମଣିଷ ମନରେ ବିପୁଳ ବିତ୍ତଶାଳୀ ହେବାର ପ୍ରବଳ ଆକାଂକ୍ଷା ମଧ୍ୟ ଭରି ରହିଥିଲା । ଈର୍ଷା, କ୍ରୋଧ, ଗର୍ବ, ଅହଂକାର, ଆସ୍ଫାଳନ—ଏ ସବୁଥିରେ ଅନ୍ୟ ଦେଶ ପରି ଏ ଦେଶର ମଣିଷର ମନ ପ୍ରାଣ ବି ସବୁବେଳେ ଉଚ୍ଛ୍ବସିତ । ସଭ୍ୟ, ଶିକ୍ଷିତ, ସୁଖୀ ହେବା ଲାଗି ସିନା ଲକ୍ଷେ ଅଭାବ ଥିଲା, ଚୋର ଡକେଇତି, ହାଣ କାଟର ଅଭାବ କେବେ ଶୁଣା ଯାଇ ନ ଥିଲା । ନିଃସ୍ବ ନିରାଶ୍ରୟ ଚୋର, ଡକେଇତମାନେ ଡକେଇତି ସମ୍ପତ୍ତି ରଖନ୍ତି କେଉଁଠି ? ସେମାନଙ୍କର ବାସ ଘର କାହିଁ ? ଯେତେବେଳେ ଯାହା ପାଉଥିଲେ, ରଖିଦେଇ ଆସୁଥିଲେ ମାଳାଚଳର ଅଜାଙ୍କ ଘରେ । ପୁଲିସ ତ ତାଙ୍କର ହାତ ମୁଠାରେ । ଆଉ ପରବାଏ କଣ ? ଚୋର,

ଡକେଇତଙ୍କ ଅଭାବ ସମୟରେ ସେ ଧାନ ଚାଉଳ ଦାନ କରୁଥିଲେ । ସେମାନେ ଖୁସି ହୋଇ ଯାଉଥିଲେ ।

ନୀଳାଚଳ ସ୍କୁଲରୁ ଫେରିଲାବେଳେ ଅନେକ ଦିନ ତାଙ୍କର ଘରେ ବହିଟେ ପକେଇ ଦେଉଥିଲା । କାରଣ ଘରେ ଖାଇବା ପ୍ରତି ତାର ଆଦୌ ଲାଳସା ଜାତ ହେଉ ନଥିଲା । ସେ ଅନେକ ଦିନ ଦେଖିଥିଲା, ପେଟ ପୂରୁନାହିଁ ବୋଲି ମାଁ ତାର ମାଣ୍ଡିଆ ଜାଉରେ ଚାଉଳ ପାଣି ମିଶାଇ ବାଢ଼ି ଦେଉଥିଲେ । ହେଲେ ଅନ୍ୟାୟ ଭାବରେ ସଞ୍ଚିତ ସମ୍ପତ୍ତି ଦେଖିଲେ ତାର ହାଡ଼ ଜଳି ଯାଉଥିଲା । ସେ ଉକ୍ତ ଚାଉଳ ଗ୍ନେବାଉ ଥିଲା ।

ନୀଳାଚଳର ଖେଳବେଳଗୁଡ଼ିକ ବଡ଼ ମଜାରେ କଟି ଯାଉଥିଲା । ବାରପଟି ତେନ୍ତୁଳି ଗଛମୂଳେ ଖେଳ ଜମୁଥିଲା । ଆଦିବାସୀ, ଅଣ-ଆଦିବାସୀ, ପୁଅ ଝିଅ ବାଛ ବିଚାର ନାହିଁ । ଭଲ ଭଲ ଖେଳ ଖେଳୁଥିଲେ । ଦେଶୀଆ, ପରଜା, ଡମ୍ବ, ଗାଦବା, ବ୍ରାହ୍ମଣ, କରଣ ସବୁ ଜାତିର ପୁଅ ଝିଅ ନୀଳାଚଳର ନେତୃତ୍ୱକୁ ସବୁଠି ସ୍ୱୀକାର କରୁଥିଲେ । ତମେ କେବେ ଗାଁ ତଳର ସନ୍ତସନ୍ତିଆ, ଝିଙ୍କାରିଙ୍କ ଝିଁ ଝିଁରେ ମୁଖରିତ ଝଂକାଳିଆ ତେନ୍ତୁଳି ଗଛର ଝରାବେଳିଆ ଶୀତଳ ଛାଇରେ ବସିଛ ? ଅନେକ ସମୟ ଯାଏ ବସିଛ ? ନାଲି, ନେଳି, ଧଳା ଫୁଲ ଫୁଟିଥିବା ଦାସକେରେଣ୍ଡା ଗଛଗୁଡ଼ିକୁ ଅନେଇଛ ? ଚିହ୍ନିତ ବ୍ଲାଉଜ କନାପରି ବିଚିତ୍ର ଡେଣା ହଲେଇ ହଲେଇ ଏପାଖ ସେପାଖ ଉଡ଼ି ବୁଲୁଥିବା ପ୍ରଜାପତିମାନଙ୍କୁ ନିରୀକ୍ଷଣ କରିଛ ? ଜାଣେନା ଏ ସୌଭାଗ୍ୟ ତମେ ଲାଭ କରିଥିଲ କି ନାହିଁ । କିନ୍ତୁ ନୀଳାଚଳ ଏହି ବିମଳ ମୁଗ୍ଧ ବାତାବରଣ ଭିତରେ ଉଲ୍ଲସିତ ଖେଳବେଳଗୁଡ଼ିକୁ ବେଶ୍ ଉପଭୋଗ କରୁଥିଲା । ଏହା ଓଡ଼ିଶା ଦେଶର

କଥା । ଭୁଲ୍‌ରେ ତମେ ମୁଁ ମହାବଳୀପୁରମ୍ କ କାଞ୍ଚିବରମ୍ କଥା କହୁଛି ବୋଲି ମୋ ଉପରେ ଗର ଗର ହେବ ନାହିଁ !

ସନ୍ଧ୍ୟାରେ ସ୍କୁଲରୁ ଫେରିଲା ପରେ ସେ ବହି ପଢ଼ିବାକୁ ବ୍ୟାକୁଳ ହେଉଥିଲା । କିନ୍ତୁ ସେ ଝିନର ସେଡ଼ବ ନପଢ଼ ମଫସଲରେ ବହି କାହିଁ ? ମନେ ଅଛି ନା, ଏହା ପ୍ରାୟ ପଚିଶି ବର୍ଷ ତଳର କଥା ମୁଁ ତମକୁ କହୁଛି ।

ସେ ଶୁଣିଥିଲା, ଏଠାରୁ ତିରିଶି ମାଇଲ ଦୂର ଗାଁରେ ଜଣେ କିଏ ସ୍ତ୍ରୀ ଲୋକ କଟକ ଆଡ଼ୁ ଆସି ବହି ବେପାର କରୁଛି । ମାଙ୍କ ନିକଟରେ ଅଳି କଲା, ତାକୁ ଡକାଇ ବହି କିଣାଇବାକୁ ପଡ଼ିବ । ମାଁ ମୁଣ୍ଡରେ ହାତ ଦିଅନ୍ତି । ପେଟ ପୁରାଇବାକୁ ମାଣ୍ଡିଆ ପେଜ ଅଣ୍ଟୁ ନାହିଁ ଯେ, ଚାଉଳ ପାଣି ମିଶା ହେଉଛି । ବହି କିଣିବାକୁ ପଇସା କାହିଁ ? ତଥାପି କରୁଣାମୟୀ ଜନନୀ ଅଳିଅଳ ପଢ଼ୁଆ ପୁଅର ସ୍ନେହ ସର ଝର ଅବହେଳି ଏଡ଼ି ପାରନ୍ତି ନାହିଁ । ନୀଳାଚଳକୁ କୋଳକୁ ଟାଣିନେଇ ଲୁହ ପୋଛି ଦିଅନ୍ତି । କହନ୍ତି, ଏଇ କାର୍ତ୍ତିକ ମାସରେ ସେ ବହି ଦୋକାନୀ ବୁଢ଼ୀ ଆସିବ, କାର୍ତ୍ତିକ ପୁରାଣ, ଲକ୍ଷ୍ମୀ ପୁରାଣ ବିକିବାକୁ । ସେତିକିବେଳେ ନିଶ୍ଚେ ତୋ ପାଇଁ ଖଣ୍ଡେ ଅଙ୍କପଢ଼, ଖଣ୍ଡେ ନାମରତ୍ନଗୀତା, ଖଣ୍ଡେ ଦାର୍ଢ୍ୟତାଭକ୍ତି କିଣାଇ ଦେବି ।

ନୀଳାଚଳ ସନ୍ତୁଷ୍ଟ ହୁଏ । କେଉଁ କାଳର ଛିଣ୍ଡା କଟିଆ କମଳଲୋଚନ, ଗୋପୀଭାଷା ବହି ଦି ଖଣ୍ଡ ବାହାର କରି ପଢେ । ମନ ତାର କାହିଁରେ କଣ ଖୁସି ହୋଇଯାଏ ।

ଝିକି ଝିକି କିରାସିନ ଦୀପଟିଏ ଜାଳି ଅନେକ ରାତିଯାଏ ସେ ବାରମ୍ବାର ସେହି ବହିଗୁଡ଼ିକ ପଢେ । ହଠାତ୍ ଦୀପରୁ ତେଲ ସରିଯାଏ । ଦୀପ ଲିଭେ । ନିରାଶ ହୋଇ ସେ ଶୋଇପଡ଼େ ।

ନୀଳାଚଳ ସତ କହେ, ମିଠା କଥା କହେ, ଗାଁର ବଡ଼ ସାନ, ପାରିଲା ନପାରିଲା ସମସ୍ତଙ୍କୁ ସେ ପ୍ରେମ କରେ, ଭକ୍ତି କରେ । ସବୁ ଶ୍ରେଣୀର ଲୋକଙ୍କ ନିକଟରେ ସେ ପରମ ଶ୍ରଦ୍ଧାର ପାତ୍ର ହେଲେ ବି ନିଃସ୍ୱ, ଅପାରଗ, ଭିକ୍ଷୁକମାନଙ୍କର ବୋଲି ସେ ମାନେ । ତାଙ୍କର କାମ କରିଦିଏ । ତାର ଏ ଭଲ ବ୍ୟବହାରରେ ଦେଖିଲା, ଜାଣିଲା ଲୋକ ତଟସ୍ଥ ହୁଅନ୍ତି ।

ସ୍କୁଲ ଛୁଟି ଦିନ—ବରଷା ଦିନରେ ସକାଳ ପହରୁ ସେ ସାଙ୍ଗ ପିଲାଙ୍କୁ ନେଇ ବିଲକୁ ଯାଏ, ନଈ କୂଳରେ ବୁଲେ । ଏ ଦେଶର ମାଛ ଧରିବା ଯନ୍ତ୍ର 'ଚିସର', 'ଦାନ୍ଦର' ତମେ କେବେ ଦେଖିଛ ? ସରୁ ସରୁ ବାଉଁଶ ବତାରେ ତିଆରି ଏ ଯନ୍ତ୍ରଟିମାନ ଭାରି ସହଜ । ନୀଳାଚଳ ମାଛ ଧରେ, ଛୋଟ ଛୋଟ ପ୍ରାଣୀମାନଙ୍କର ଜୀବନ ସାଙ୍ଗରେ ଖେଳ ଖେଳିବାକୁ କେମିତି ଡର ଡର ଲାଗେ । ସେ ଠିଆ ହୁଏ । ମୁଣ୍ଡ ଟେକି ଚାରିଆଡ଼କୁ ଅନାଏ । ଆଖି ପାଇଲା ଯାଏ ସେ ନିରୀକ୍ଷଣ କରେ । ଓଃ, ଅସଂଖ୍ୟ ଲୋକ ବିଲ ମାଳରେ ପଶି ମାଛ ଧରୁଛନ୍ତି— ପିଲା, ଢେଣ୍ଡା, ବୁଢ଼ା । ସେ ଜଣେ ଦୟା କଲେ ଏ ମାଛଗୁଡ଼ାକ ବଞ୍ଚିପିବେ କି ? ପୁଣି କାମରେ ଲାଗିଯାଏ ।

ମନେକର ତମେ ନିଜେ ଛ, ସାତ ବର୍ଷର ପିଲାଟିଏ । ଗଣ୍ଠିର ବିଲରେ ଆଣ୍ଠୁଏ କାଦୁରେ ପଶି ମାଛ ଧରୁଛ । ସାପ ପରି ବାମ୍ବି ମାଛଗୁଡ଼ିକ ଯେତେବେଳେ ପାଣି ପଚ ପଚ କାଦୁ ଭିତରେ ସଲ ସଲ ହୋଇ ଧାଇଁ ପଳାଉଛନ୍ତି, ତମେ ଖେଦି ଗୋଡ଼ାଉଛ । କାଦୁରେ ଗୋଡ଼ ଗଳି ଯାଉଛି, ମୁହଁ ମାଡ଼ି ପଡ଼ିଯାଉଛ । ଆଖିରେ, ନାକରେ କାଦୁପାଣି ପଶୁଛି । ଲୁଗା ପଟା ସର ସର ହେଉଛି । ଇସ୍ ! କି କଦର୍ଯ୍ୟ ଦିଶୁଥିବ ଯେ ? କଳ୍ପନା କରି ପାରୁଛ ? ନୀଳାଚଳ କିନ୍ତୁ ହସି ହସି ଫେରି ଆସେ, ମାଛ ମିଳୁ କି ନ ମିଳୁ ।

ଅଣିଆ ଅପିଆ ରହି ଦିନ ଦିପହର ଯାଏ ସେ ଯେତେବେଳେ ମାଛ ଧରୁଥାଏ, ପାଣି କାଦରେ ବୁଡ଼ିଯାଇ ଥାଏ—ଆଦିବାସୀ ସ୍ତ୍ରୀ ବା ପୁରୁଷ ଯାହାର ହାବୁଡ଼େ ପଡ଼ନ୍ତୁ, ତାକୁ ଟେକି ନଅନ୍ତି। କାଖରେ ବସେଇ ମୁହଁରେ ଚୁମା ଦିଅନ୍ତି। ଆଖିରୁ ନାକରୁ କାଦୁଅ ପୋଛନ୍ତି। କହନ୍ତି, ମାଁ ଗାଳି ଦେବେରେ, କାହିଁକି ଏମିତି ବୁଲୁଛୁ। ସାପ ବେଙ୍ଗର ରାଇଜ ଏ। ଚାଲ୍ ଛାଡ଼ିଦେଇ ଆସିବ।

ମାଳାଚଳ ମାଛ କଥା ଭୁଲେ, ନିଜକୁ ବି ଭୁଲିଯାଏ। ଉପସ୍ଥିତ ମଣିଷର ସ୍ନେହ, ଷରାଗ—ସଚୋଟ ମାନବିକତାର ମହକରେ ସେ ଘାଏଲ ହୁଏ। ମାଛ କଙ୍କଡ଼ା ସବୁ ସାଙ୍ଗ ପିଲାଙ୍କ ଭିତରେ ବାଣ୍ଟି ଦେଇ ସେଇ ସ୍ତ୍ରୀ କି ପୁରୁଷ ଲୋକର କାଖରେ ବସି ଘରକୁ ଯାଏ। ମାଁ ମୁଣ୍ଡ କରାଡ଼ ହୁଅନ୍ତି। କାନ୍ଦନ୍ତି। ମାରନ୍ତି। ମାଛ ପାଇଁ ନୁହେଁ, ତାଙ୍କ ନିକଟରେ ଦୀର୍ଘ ସମୟ ଧରି ତାର ଅନୁପସ୍ଥିତି ପାଇଁ।

ତିନି ବର୍ଷ ଭିତରେ ମାଳାଚଳ ଗାଁ ଇସ୍କୁଲର ପାଠ ସାରିଲା। ତୃତୀୟ ଶ୍ରେଣୀ ପରେ ଆଉ ପାଠ ନାହିଁ। ଇସ୍କୁଲର ପାଠ ସିନା ମାଳାଚଳ ଶେଷ କରିଦେଲା, ଶିକ୍ଷକ କିନ୍ତୁ ତାକୁ ଛାଡ଼ ପାରିଲେ ନାହିଁ। ସେ ତା ପିତାଙ୍କ ସହ ପରାମର୍ଶ କଲେ। କଥା ହେଲା, ଶିକ୍ଷକ ନିଜେ ଯେତେ ପାଠ ପଢ଼ିଛନ୍ତି, ସେ ସବୁ ସେ ମାଳାଚଳକୁ ପଢ଼ାଇବେ। ସ୍କୁଲରେ ନା ଥାଉ କି ନ ଥାଉ, ଶିକ୍ଷକ ନିଜ ଦାୟିତ୍ୱରେ ପଢ଼ାଇବେ।

ଶିକ୍ଷକ ରାଧାଚରଣ ପାଢ଼ି। ସେ ଆଜି ସ୍ୱର୍ଗରେ ଅଛନ୍ତି। ଓଡ଼ିଶା ଦେଶର ଗୁରୁ! ଆଜି ମଧ୍ୟ ତାଙ୍କର କଥା ପଡ଼ିଲେ ମାଳାଚଳ ହାତଯୋଡ଼ି, ଶୂନ୍ୟକୁ ଚାହିଁ ପ୍ରଣାମ ଜଣାଏ। କି ଉଦାର! କି ମହତ୍। କି ବିଜ୍ଞ, ଜ୍ଞାନୀ, ବୁଦ୍ଧିମାନ ସେ! ଏମିତି ଶିକ୍ଷକ ଯଦି ଶହେ

ଜଣ ଥାନ୍ତେ, ଏ ଦେଶର ଶିକ୍ଷା ଆଦର୍ଶ ଦଶ ପାଦ ଆଗକୁ ଆଗେଇ ଯାଆନ୍ତାଣି ।

ମାଳାଚଳ ଚତୁର୍ଥ ଶ୍ରେଣୀର ପାଠ ପଢ଼ୁଥିଲା । ଆଣ୍ଠୁ ତଳେ ଏକ ବିଷମ ପ୍ରକାରର ଘା ହେଲା । ପନ୍ଦର ଦିନ ଯାଏ ସେ ଶୋଇ ପାରିଲା ନାହିଁ କି ଠିଆ ହୋଇ ପାରିଲା ନାହିଁ । ତମେ ଏ ଯୁଗର ପ୍ରଗତିଶୀଳ ବଡ଼ ସହରର ବଡ଼ ମହଲା କଲେଜରେ ପାଠ ପଢ଼ୁଛ । ତମେ କେମିତି ବୁଝିପାରିବ, ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ସମ୍ପର୍କ କି ମଧୁର, କି ନିବିଡ଼ ହୋଇପାରେ । ଗାଁ ଇସ୍କୁଲର ଶିକ୍ଷକ ରାଧାଚରଣ ପାଢ଼ି ପନ୍ଦର ଦିନ ଯାଏ ଭଲରେ ମୁଠେ ଖାଇ ନାହାନ୍ତି କି ଶୋଇ ନାହାନ୍ତି । ଯେତେ ଯେଉଁଠି ଡିସାରି (ଗାଁ ବୈଦ୍ୟ), ଗୁଣିଆ, ସମସ୍ତଙ୍କଠାକୁ ସେ ଧାଇଁଛନ୍ତି । ଔଷଧ ଆଣିଛନ୍ତି । ଶେଷରେ ପନ୍ଦର ଦିନରେ ଘା ପାଚିଲା । ପାଢ଼ି ଡିସାରିକୁ ପଚାରି ଖଣ୍ଡେ କଞ୍ଚା ହଳଦି ଓ ଦି ତିନଟା କଞ୍ଚା ଚିଙ୍ଗୁଡ଼ି ମାଛ ବାଟି ଲଗେଇ ଦେଲେ । ଘା ଫାଟିଲା । ମାଳାଚଳ ଶୋଇ ପାରିଲା । ପାଢ଼ି ଶୋଇଲେ ।

ଥରେ ରାଧାଚରଣ ପାଢ଼ି ମାଳାଚଳର ବାପାକୁ କହିଲେ, ଏଥର ମାଳାଚଳକୁ ପାଠ ପଢ଼େଇବାକୁ ମୋତେ ଡର ମାଡ଼ୁଛି । ଏଥର ତାକୁ କୌଣସିମତେ ସହରର ହାଇସ୍କୁଲକୁ ପଠାଇ ଦିଅନ୍ତୁ । ମାଳାଚଳକୁ ପାଖରୁ ଅନ୍ତର କରିବା କଥା ପଡ଼ିଲେ ବାପାଙ୍କର ମୁଣ୍ଡରେ ଚଡ଼କ ପଡ଼େ । ସେ ଗୁମନିଆ ହୋଇ ଯାଆନ୍ତି । ଓଡ଼ିଆ ବାପ ପରା ! ମାଷ୍ଟ୍ରଙ୍କ ଘରକୁ ବୋଝେ ବାସନା ଚାଉଳ, ହାଣ୍ଡିଏ ଭଲ ଗୁଡ଼ ପଠାଇ ଦେଇ ରାତିରେ ଯାଇ କାକୁତି ମିନତି ହୋଇ କହନ୍ତି, ମାଳାଚଳକୁ ମୁଁ କୁଆଡ଼େ ଛାଡ଼ି ପାରିବି ନାହିଁ । ଆପଣ ଯେତିକି ପାରିବେ ସେତିକି ପାଠ ତାକୁ ପଢ଼ାନ୍ତୁ । ଆପଣଙ୍କଠୁଁ ବଳି

ଅଧିକ ଶିକ୍ଷିତ ଏ ଖଣ୍ଡକରେ କିଏ ଅଛି କି ? ମୋ ପୁଅ ଯଦି ସେତିକି ପଢ଼ିବ, ଯଥେଷ୍ଟ ।

ସାହେବ ହସି ହସି କହନ୍ତି, ତମେ ନିଜେ ପାଠ ପଢ଼ିନ, ତେଣୁ କେମିତି ଧାରଣା କରି ପାରିବ ? କିନ୍ତୁ ମୁଁ ଦେଖୁଛି, ନାମ ମାତ୍ର ଚତୁର୍ଥ ଶ୍ରେଣୀ··· ମାତ୍ର ମୁଁ ଯେତିକି ପାଠ ନବମ ଶ୍ରେଣୀ ଯାଏ ପଢ଼ିଥିଲି, ସବୁ ସେ ଶୋଷି ନେଇଛି । ତାକୁ ପଢ଼େଇବା ଲାଗି ମୋଠି ଆଉ କିଛି ବିଦ୍ୟା ନାହିଁ । ମୁଁ କଣ କରିବି ? ନୀଳାଚଳର ବାପା ପିଲାଙ୍କ ଭଳି ଅଳି କରନ୍ତି ।

ନୀଳାଚଳ ପୁଣି ସ୍କୁଲକୁ ଯାଏ । ଶିକ୍ଷକଙ୍କ ଘରକୁ ଯାଇ ବି ପଢ଼ିଲା ପାଠକୁ ପୁଣି ପୁଣି ପଢ଼େ ।

ଥରେ ସାହେବଙ୍କ ସ୍ତ୍ରୀ—ନୀଳାଚଳର ଗୁରୁମାଙ୍କୁ ଜର ହେଲା । ନୀଳାଚଳ ସବୁଥର ପରି ପାଖେ ପାଖେ ରହିଲା । ସେ ଦିନ ରବିବାର । ସାହେବ ହାଟକୁ ଯାଇଥିଲେ । ଗୁରୁମା କହିଲେ— ଗୋଟାଏ ଟଭ୍ରା ଖାଇବାକୁ ମନ ହେଉଛି । କିନ୍ତୁ କିଏ ଆଣିଦେବ ? ଏ ଗାଁରେ କି ଆଖ ପାଖ ଗାଁରେ ମଧ୍ୟ ଟଭ୍ରା ଗଛ ନାହିଁ । ପ୍ରାୟ ପାଞ୍ଚ ମାଇଲ ଦୂରରେ, ଡାଙ୍ଗରି ଗାଁରେ ଟଭ୍ରା ମିଳିବ । ବର୍ଷା ଦିନ । ବଣ ପାହାଡ଼ ରାସ୍ତାରେ କିଏ ଯିବ ?

ନୀଳାଚଳ ଗମ୍ଭୀର ହେଲା । କହିଲା, ଆପଣ ଶୁଅନ୍ତୁ । ମୁଁ ଆସୁଛି । କାହାକୁ ନ କହି ଚାଲିଗଲା ଟଭ୍ରା ଆଣିବାକୁ । ନ କି ଦଶ ବର୍ଷର ପିଲାଟିଏ । ଝିର ଝିର ବର୍ଷାରେ ବଣ ପାହାଡ଼ ଡେଇଁ ଚାଲିଛି । ରାସ୍ତା ଘାଟ ଜଣା ନାହିଁ, ଡାଙ୍ଗରି ଗାଁ ସେ କେବେ ଦେଖି ନାହିଁ । ପଚାରି ପଚାରି ସେ ଚାଲିଲା ।

ସକାଳ ଯାଇ ସଞ୍ଜ ହେଲା । ଗୁରୁମା, ଗୁରୁଜୀ, ବାପ, ମାଁ ସମସ୍ତେ ବ୍ୟସ୍ତ ହେଲେ । ଚାରିଆଡ଼େ ଲୋକ ପଠାହେଲା । ଘୂଞ୍ଚୁ ଘୂଞ୍ଚୁ ଅନ୍ଧାର ଘୋଟି ଆସିଲା ।

ମାଳାଚଳ ଦୂର ଗାଁକୁ ଯାଉ ଯାଉ ବାଟ ଭୁଲିଗଲା । ନଦୀ, ନାଳ, ବଣ, ପାହାଡ଼ ଡେଇଁ ଡେଇଁ କେତେ ବୁଲିଲା । ଶେଷରେ ବାଟ ବଣା ହୋଇ କାନ୍ଦ କାନ୍ଦ ଗୋଟିଏ ବରଗଛ ତଳେ ବସିଥିଲା । ଜଣେ କଏ ବାଟୋଇ ପାଖକୁ ଯାଇ ଅବସ୍ଥା ବୁଝିଲେ । ଦୟା ଜାତ ହେଲା । ବୋଝେ ଟଭ୍ର ଫଳ ନଜେ ବୋହି ତାକୁ ଘରେ ଆଣି ଛାଡ଼ିଲେ ।

ଏମିତି ଏ ଓଡ଼ିଶା ଦେଶର ସେ ପିଲା—ତା କାହାଣୀ ଲେଖି ବସିଲେ ଆହୁରି କେତେ ଦିନ ଲାଗିବ । ଆଜି ତା ବିଷୟରେ ଏତିକି ଲେଖିସାରି ତମକୁ ଗୋଟିଏ ପ୍ରଶ୍ନ ପଚାରୁଛି । ଏ ପ୍ରଶ୍ନର ଉତ୍ତର ତମେ ଏଠିରେ ଲେଖିବା ଦରକାର ନାହିଁ । ଉତ୍ତର ଦିଅ କାର୍ଯ୍ୟରେ ।

ମୁଁ ମନେକରେ, ତମେ ମାନ୍ଦ୍ରାଜରେ ଉଚ୍ଚ ଶିକ୍ଷା ପାଉଥିଲେ ବି, ତମ ବାପ ମାଁ ସେଠି ଘର କରି ରହିଥିଲେ ବି, ତମେ ଓଡ଼ିଶା ଦେଶର ଗୌରବ । ଓଡ଼ିଆ ଜାତିର ଦୀପଶିଖା । ତମଠୁଁ ଏ ଜାତି କେତେ ତ୍ୟାଗ, କେତେ ସ୍ନେହ, କେତେ ମମତା ଆଶା କରୁଛି । ତାରି ଭିତରେ କୁହ, ତୁମେ ବିଚାର କରି ସ୍ଥିର କର—ତମେ ଏ ମାଳାଚଳ ବାହାଘରକୁ, ତମର ଏ ଜାତିର ମୌଳିକ ପ୍ରବାହକୁ ଗ୍ରହଣ କରି ପାରିବ କି ? ତୁମେ ଏ ଗପର ଉପସଂହାର ଆବିଷ୍କାର କର ।

ହଁ, ଗୋଟିଏ କଥା, ତମର ବନ୍ଧୁ ମୋ ପାଖକୁ ଚିଠି ଲେଖିଥିଲେ – ତମେ ମୋତେ କୁଆଡ଼େ ଘରି ଭଲ ପାଅ । ମୁଁ ଚାହିଁଲେ, ତୁମେ ମୋତେ ବିବାହ କରିବ । ମୁଁ ବି ତୁମକୁ ବିବାହ

କରି ପାରିଥିଲେ ଭାରି ଖୁସି ହୁଅନ୍ତି । କିନ୍ତୁ ମୁଁ ଯେ ଜଣେ କପଟି ଓଡ଼ିଆଣୀକୁ ବିବାହ କରି ସାରିଛି । ଆଜି ତୁମ ବନ୍ଧୁଙ୍କୁ କି ଉତ୍ତର ଦେବି ଭାବୁ ଭାବୁ ତୁମଠାକୁ ଏ ଚିଠିଟି ଲେଖି ମୋର କର୍ତ୍ତବ୍ୟ ଶେଷ କରୁଛି ।

ଆଶାକରେ, ତମେ ଡନ୍‌ଲପ୍ ଚକିଆର ବିପୁଳ ନରମତା ଭିତରେ ଆପଣାର ଅଲିଅଳ ବେକ ସଣ୍ଢାକୁ ଦଳୁ ଦଳୁ ଏ ଚିଠିର ମର୍ମ ଯଥାର୍ଥ ଭାବରେ ବୁଝି ପାରୁଥିବ । ହୁଏତ ମୁରୁକି ମୁରୁକି ହସୁଥିବ ।

ଯାହାହେଉ ଏଣିକି ତୁମେ ତୁମର କର୍ତ୍ତବ୍ୟ ଶେଷ କର ! ନୀଳାଚଳ ଓଡ଼ିଶାର ପୁଅ, ତୁମେ ତା ପ୍ରତି ତୁମର କର୍ତ୍ତବ୍ୟ କର' ! ତମ ଜାତି ପ୍ରୀତିର ପ୍ରକୃତ ପରିଚୟ ମିଳୁ । ମୋର ଶୁଭେଚ୍ଛା ନେବ ।

ଗୁଣମୁଗ୍‌ଧ
ଜ ଚେ ନ୍ଦ୍ର ସୁ

ଓଃ କେଡ଼େ କେଡ଼େ ପଞ୍ଜରା ହାଡ଼ଗୁଡ଼ିକ ଫୁଟି ଦିଶୁଛି !

ଏଇ ହରି ପନ୍ଦରର ବାପା ଜଣେ ବିଖ୍ୟାତ କବି ଥିଲେ । ସେ ଗଲା ଶ୍ରାବଣ ମାସରେ ମରିବା ପୂର୍ବରୁ କହୁଥିଲେ, ତାଙ୍କ ପୁଅ ହରି ହୁଁ କରିଦେଲେ ପର୍ବତ ଟାଳି ପାରେ ।

ଆଜି ଅସ୍ଥି କଙ୍କାଳ ସାର ଉତ୍କଟ ମରୁଡ଼ି-କବଳିତ ଦୁଇ ପୁଅଙ୍କୁ କାନ୍ଧରେ ବସେଇ, ଟଣ୍ଟିରି ବୋହି, ରୋଗୀଣା ବଡ଼ ଝିଅଟିର ହାତ ଟାଣି ଟାଣି ରକ୍ତ ମାଂସହୀନ ଦେହରେ ସେ ଆଉ କେତେ ବାଟ ଚାଲନ୍ତା ?

ମାଇପ ପଦ୍ମାବତୀ ତ ଦୁଇ ଦିନ ଆଗରୁ ହାଲିଆ ହୋଇ ଗଲାଣି । କେତେଟା ରନ୍ଧାବଢ଼ା ସରଞ୍ଜାମର ବୋଝ ସାଙ୍ଗରେ ଲଳରକ୍ତ ଝାଡ଼ାରେ ଅଂଶାକ୍ତ ସ୍ଲେଠ ଶିଶୁଟିର ଜଞ୍ଜାଳ ସେ ଆଉ ସମ୍ଭାଳି ପାରୁନାହିଁ । ଆଉ ମାସେ ଖଣ୍ଡେ ବି ଯିବ କି ନାହିଁ··· କେଜାଣି ଏଇ କେତେ ଦିନ ଭିତରେ ଆଉ ଗୋଟାଏ ସନ୍ତାନର ଜନନୀ ହେବାର ଦୁର୍ଦ୍ଧିନମସ୍ଥ ଦୁର୍ଭାଗ୍ୟକୁ ମୁଣ୍ଡରେ ମୁଣ୍ଡେଇ ଭୋକ ପେଟରେ ସେ କା ଆଉ କେତେ ଦଉଡ଼ନ୍ତା ?



ରଣଯଙ୍କର ନାୟକ

ଢ଼ି ପନ୍ଦରର ଖସ୍‌ବେକ ।

କଳାହାଣ୍ଡିରୁ କୋରାପୁଟ ମଝି 'ଆମ୍ବଦାଣି' ଘାଟିର ସବୁ ଉଚ୍ଚ ଉଠାଣି ଉଠିବା ପୂର୍ବରୁ ସମସ୍ତେ ସେଠି ଝୁଂକା ଆମ୍ବଗଛ ଛାଇରେ ବସି ପଡ଼ିଲେ । ଅଧେ ଶୋଇ ପଡ଼ିଲେ । ଗେରସ୍ତ ଭାରିଜା ଦୁହେଁ ଛଟପଟିଲେ ।

ହରି ପନ୍ଦରା ଏମିତି ସେମିତି ଲୋକ ନୁହେଁ ।

ଉଇଲି ହକକୁ ବଜାୟ ରଖିବା ଲାଗି କେତେ ଯତ୍ନରେ କରାଯାଇ ଥିବା ସେଟେଲମେଣ୍ଟ ରେକର୍ଡ ମୁତାବକ ହରି ପନ୍ଦରାର ତେତିଶି ଏକର ହାଣ୍ଡି ମାଉଁସିଆ ଧାନ ଏକ ଜମି କଳାହାଣ୍ଡିରେ ଅଛି । ସୁନା ଥିଲା । ଗୋରୁ ଗାଈ ଥିଲେ । ତା ବାପା ସଞ୍ଜକାରେ ବୁଲିବା ପାଇଁ, ପୁଣ୍ୟ ପର୍ବ କି ଯାତ୍ରା ମଉଚ୍ଛବରେ ରଜା ଘରକୁ ଯିବା ପାଇଁ ଯେଉଁ କାନ ଖଣ୍ଡିଆ ଘୋଡ଼ାଟିଏ ରଖିଥିଲା, ସେ ବି ଥିଲା ଗଲା ବୁଧବାର ପର୍ଯ୍ୟନ୍ତ । ଶଗଡ଼ ଥିଲା । ଆଖୁ ଘଣା ଥିଲା । ଏଡ଼େ ଏଡ଼େ ଗୁଡ଼ରନ୍ଧା କଡ଼େଇ ଥିଲା । ପଦ୍ମନାଡ଼ ଆଉ ମାଛଭରା କେଡ଼େ ବଡ଼ ପୋଖରୀ ଥିଲା, କୁଆ ଆଖି ପରି ପାଣି ତିନଶ ପଁଷଠି ଦିନ ପହଁରୁ ଥାଏ । ଆହୁରି କେତେ ଥିଲା ! ଲମ୍ବା ଚୌଡ଼ା ଗୁହାଳ ଘର, ଖଣ୍ଡିଆ କୋଠା ଘର ବି ଅଛି ।

ପାହାଡ଼ ଉପରେ, ବର୍ଷା ଦିନିଆ ଝରଣା କୂଳୁଆ ମନକୁ ଉଠିଥିବା ଝୁରି ଆମ୍ବ ଗଛର ହାତ ନ ପାଇବା ଉଞ୍ଚାରେ ଓହଳିଥିବା କସି ଆମ୍ବ ଝୁମ୍ପାଗୁଡ଼ିକୁ ଅନେଇ ବଡ଼ ଝିଅ ଅହଲ୍ୟା କହିଲା— ବାପା, ଆମେ କୁଆଡ଼େ ଯିବା ?

ଦୀର୍ଘ ନିଶ୍ୱାସ ଛାଡ଼ି ହରି ପନ୍ଦରା ଉତ୍ତର ଦେଲା, ଯେଉଁଠି ଧାନ ସୁଉଳ ମିଳିବ ସେଇ ଗାଁକୁ । ଏ ପର୍ବତ ସେ ପାଖକୁ...

'ଏ ବର୍ଷ ପରା ଆମର କୋଠା ଘରଟି ପୁରା ହେବ ? କେବେ ଆମେ ସେ ଘରେ ରହିବା ଯେ ?' ସ୍ୱରରେ ନଗାଡ଼ ଆସକ୍ତିର କରୁଣ ସ୍ପର୍ଶ !

ହରି ପଦବାର ବୁକୁ ଭିତରଟା କେମିତି ଉଳୁରୁ ଗୁଳୁରୁ ହୋଇ ଉଠିଲା । ତାକୁ ଲାଗିଲା ସତେ ଯେମିତି ତାର କଲିଜାଟା ଛିଣ୍ଡି ଛିଣ୍ଡି ଯାଉଛି ।

ଗତ ବର୍ଷ ସୁଦ୍ଧା ସେ ଯାହା କିଛି ସଞ୍ଚୟ କରିଥିଲା, ତାର ଜନମପୁରେ ସେ ଗୋଟାଏ କୋଠାଘର ତିଆରି ଆରମ୍ଭ କରିଦେଇ ଥିଲା । କାମଟା ଶୀଘ୍ର ପୁରା କରିଦେବା ପାଇଁ ସ୍ୱାମୀ ସ୍ତ୍ରୀ ଦୁହେଁଯାକ ଏତେ ବ୍ୟଗ୍ର ହୋଇ ପଡ଼ିଥିଲେ ଯେ, ଟଙ୍କା ସରିଯିବାରୁ ଥିବା ସୁନାରୁ କେଇଶୀ ଭାଗ ବନ୍ଧା ପକାଇ ଘରେ ଲଗେଇ ଦେଲେ । ଏପରି କି ଗଲା ବର୍ଷର ବଳକା ଧାନତକ ମଧ୍ୟ ବିକି ଦେଇଥିଲା ।

ଉପର ଛାତଟା ଆହୁରି ବାକି ରହିଗଲା । ସିମେଣ୍ଟ ପଲସ୍ତରା ହେବାର ଅଛି । ହରିର ଆଖିରେ ଝଲସି ଉଠିଲା ସେହି କୋଠା ଘର ।

କିଏ ଜାଣିଥିଲା ଏ ବର୍ଷ ଏପରି ମରୁଡ଼ି ଯୋଗ ପଡ଼ିବ । କୁଟୁମ୍ବର ଖାଇବା ଟଙ୍କାକ ପାଇଁ ତାକୁ କଳାହାଣ୍ଡିରୁ କୋରାପୁଟ ଯିବାକୁ ହେବ ।

ଆଖି ପିଛୁଡ଼ାକେ ଯେପରି କି ରଙ୍ଗମଞ୍ଚରେ ପଟ୍ଟପରିବର୍ତ୍ତନ ହୋଇଗଲା ! ପେଟରେ ଭୋକ । ମନରେ ଡର । ପ୍ରାଣରେ ହତାଶାର ତୀବ୍ର ଦଂଶନ ।

ଆମ୍ବ ଗଛର ଶୀତଳ ଛାଇରେ ସମସ୍ତେ ଶୋଇ ପଡ଼ିଲେ ।

ହଠାତ୍ ହରି ପଦବା ଭାବିଲା, ଠିକ୍ ଏତିକବେଳେ ସେ ପାହାଡ଼ ତେଇଁ କୁଆଡ଼େ ନା କୁଆଡ଼େ ଖସିଯିବ କି ? ପିଲା ଛୁଆଙ୍କ

ମରଣାନ୍ତକ ଦୁଃଖ ଆଖିରେ ଦେଖିବା ଠାରୁ ପଳେଇଯିବା ଭଲ ନୁହେଁ କି ?

ଏତିକିବେଳେ ଜିପ୍‌ଟିଏ ଘାଟି ଉପରୁ ଗଡ଼ି ଆସୁ ଆସୁ ଅଟକିଗଲା ହରି ପନ୍ଦରର ପରିବାର ପାଖରେ । ସତେ ଯେମିତି ଦେବଦୂତ ।

'କେଉଁ ଗାଁ ତୁମର ? କୁଆଡ଼େ ଯାଉଚ ?' ଜିପ୍‌ରୁ ଓହ୍ଲେଇ ଆସି ବିନୟ ପଚାରିଲା ।

'କଳାହାଣ୍ଡି ଜିଲ୍ଲା । କୋରାପୁଟ ଯାଉଛୁ । ଚାଲିବାକୁ ଆଉ ବଳ ନାହିଁ, ବାବୁ ।'

'ତୁମର ଗୃହବାସ ଥିଲା ?'

'ସବୁ ଥିଲା । ସବୁ ଜଳ ପୋଡ଼ିଗଲା । ବର୍ଷାର ଟୋପେ ପଡ଼ିଲା ନାହିଁ । ଇନ୍ଦ୍ର ଦେବତା ଶତ୍ରୁ । ଆମେ ମଣିଷ ସ୍ଥିର କରିବୁ କଣ ?'

'ତୁମେ କୋରାପୁଟ ଯାଇ କରିବ କଣ ?'

'ଚିହ୍ନା ଜଣା ଲୋକ ଅଛନ୍ତି । ଭାବିଛୁ, ଧାର ଉଧାର ମାଗି ଏ ବର୍ଷଟା ବଞ୍ଚିଗଲେ ଦେଖିକି ଦେଖାଯିବ ।'

'ଆଶା କରୁଛ, ସେମାନେ ଦେବେ ?'

'ଥିଲେ ନିଶ୍ଚୟ ଦେବେ । ଯାଇ ପହଞ୍ଚି ପାରିଲେ ହେଲା ?'

ଏ ଭିତରେ ପିଲାଗୁଡ଼ିକ ଉଠିପଡ଼ି ଖାଇବ ଖାଇବ ହେଲେ । ଯେତିକି ପାରିଲା ହରି ପନ୍ଦରର ସ୍ତ୍ରୀ ପିଲାମାନଙ୍କ ଶୁଖିଲା ହାଡ଼ୁଆ ଦେହ ମୁହଁକୁ ତାର ଦୁର୍ବଳ ହାତରେ ଆଉଁସିବାକୁ ଲାଗିଲା ।

ସେ ଆଡ଼କୁ ଅନେଇ ଦେଇ ଦେଇ ବିନୟର ଆଖିରୁ ଖାଲି ଲୁହ ଝରିବାକୁ ଲାଗିଲା । ମଣିଷ ଆଜି ଚନ୍ଦ୍ର ଲୋକକୁ ଯିବ । ପୃଥିବୀର ଇତିହାସ ପୃଷ୍ଠାରେ ବିଜୟ ଧ୍ୱଜା ଉଡ଼େଇବ ! ନା କମେଇବ ?

'ହୁଁ...' ବନସ୍ତ ନୀରବ ହେଲା । ସବୁ କଥା ତାର ଉଦାର ମନ ପଟରେ ପ୍ରତିବିମ୍ବିତ ହେବାକୁ ଲାଗିଲା—

ସଭା, ବିକ୍ଷୋଭ ପ୍ରଦର୍ଶନ, ନେତାମାନଙ୍କର ବକ୍ତୃତା, ସମ୍ବାଦପତ୍ର ଓ ରେଡ଼ିଓର ଉତ୍କଟ ଚିତ୍କାର—

ଗାଁ ଗାଁରେ ଭୟାବହ ମରୁଡ଼ି ପରିସ୍ଥିତି ।

ପେଟ ଜ୍ୱାଳାରେ ମାଁ ପିଲାକୁ ରାସ୍ତାରେ ଗଡ଼େଇଦେଇ ଚାଲିଗଲା । କିଏ ବା ଦଶ ଟଙ୍କାରେ ବିକି ଦେଇଛି ।

ଆହାର ନ ପାଇ ପୋକ ମାଛି ପରି ଲୋକ ମରୁଛନ୍ତି!

ନିମ୍ବ ପତ୍ର ଓ ଆମ୍ବ ପତ୍ର ଖାଇ ମଣିଷ ବଞ୍ଚିଛନ୍ତି ।

ପିଇବା ପାଣି ବିନା ହା ହା କାର ।

ମରୁଡ଼ିଜନିତ ଭୟାବହ ପରିସ୍ଥିତିରେ ଜନସାଧାରଣ ଆତଙ୍କିତ ।

ଘର ଦ୍ୱାର ପିଲା କବିଲା ଛାଡ଼ି ଲୋକ ପଳାଉଛନ୍ତି ।

ମନ୍ତ୍ରୀମାନଙ୍କର ଘନ ଘନ ଗସ୍ତ ।

କୋଟି କୋଟି ଟଙ୍କାର ସାହାଯ୍ୟ ଯୋଜନା ।

ସରକାର ଅସମର୍ଥ ହେଲେ ।

ମୁଖ୍ୟମନ୍ତ୍ରୀ ଇସ୍ତଫା ଦିଅନ୍ତୁ ।

ସ୍ଥାନେ ସ୍ଥାନେ ଅନ୍ନଛତ୍ର ଖୋଲିଲା ।

ନେତାମାନେ ମରୁଡ଼ିଗ୍ରସ୍ତ ଅଞ୍ଚଳକୁ ଗଲେ ।

ଇତ୍ୟାଦି ଇତ୍ୟାଦି ।

ଏହି ଦୁର୍ଭିକ୍ଷ ପ୍ରପୀଡ଼ିତ ପରିବାରର ଅତି ନିକଟରେ ବସି ସେ ଚିନ୍ତା କରିବାକୁ ଲାଗିଲା—ସମାଧାନର ଉପାୟ କଣ ?

ବକ୍ତୃତା, ବିକ୍ଷୋଭ ପ୍ରଦର୍ଶନ, ସାହାଯ୍ୟ ସଂଗ୍ରହ ଓ ବିତରଣ ?

କେତେ ଧନ ଓ କେତେ ଜଣଙ୍କ ପାଇଁ ଏହା ସମ୍ଭବ ?

ନା କିଛି ସ୍ଥାୟୀ ଉପାୟ ଚିନ୍ତା କରିବାକୁ ହେବ !

ବିନୟ ଡ୍ରାଇଭରକୁ ଡାକି କହିଲା, ଗାଡ଼ି ଭିତରୁ ଅଖାବେଗ, ପିଇବା ପାଣି ଓ ଟିଫିନ୍ କେରିଅର୍ ନେଇ ଆ । ଏମାନଙ୍କୁ ଦେଇ ଦେ ।

'ତୁମ ନା କଣ ?' ହରି ପନ୍ଦରକୁ ପୁଚ୍ଛିଁ ବିନୟ ପ୍ରଶ୍ନ କଲା ।

'ମୋ ନାଁ ହରି ।'

'ତୁମେ ନିଅ ଏୟାକୁ । ପିଲାଙ୍କୁ ଖୁଆଇ ତୁମେ ବି ହେଁ ବ କିଛି ଖାଇ ଟିକିଏ ସୁସ୍ଥ ହୁଅ । ମୁଁ ତୁମ ସହିତ ଘଣ୍ଟାଏ ଖଣ୍ଡେ କଥାବାର୍ତ୍ତା କରିବି । ଦେଖିବା ଯଦି କିଛି ପ୍ରତିକାର କରିପାଇ ପାରେ !'

କୃତଜ୍ଞତାରେ ହରି ପନ୍ଦରର ମନ ପ୍ରାଣ ଭରିଗଲା । ମୂହୂର୍ତ୍ତିକ ମଧ୍ୟରେ ତା ହୃଦୟରେ ଫୁଟି ଉଠିଲା ସଦ୍ୟ ପ୍ରଫୁଲ୍ଲିତ ଆତ୍ମବିଶ୍ୱାସର ପଦ୍ମଫୁଲ । ସକଳ ହତାଶା, ଭୟ ଓ ବିଶାଦ କୁଆଡ଼େ ନା କୁଆଡ଼େ ଉଭେଇ ଗଲା । ସତେ ଯେପରି ଶହ ସିଂହର ମହାନ ବଳରେ ବଳୀୟାନ ହୋଇ ଉଠିଲା ତାର ସମଗ୍ର ଜୀବନ !

'ଆପଣ ··· ଆପଣ କେଉଁଠୁ ଆସିଲେ ବାବୁ ? ଆପଣ ··· ?'

'ମୋ ନା ବିନୟ । ମୁଁ ଜୟପୁରରୁ ଆସୁଛି । ଯାଉଛି ତୁମ ଜିଲ୍ଲାର ମରୁଡ଼ି ଅଞ୍ଚଳର ଲୋକମାନଙ୍କ ଅବସ୍ଥା ନିଜ ଆଖିରେ ଦେଖି ଯଦି ହୁଏ କିଛି ପ୍ରତିକାର କରିବାକୁ । ତୁମକୁ ଓ ତୁମ ପରିବାରକୁ ଦେଖି ଭାବୁଛି, ଯଦି ମୁଁ ତୁମ ପାଇଁ କିଛି କରିପାରେ ତେବେ ଅନ୍ୟମାନଙ୍କୁ ଦେଖିବାକୁ ଯିବି । ନଚେତ୍ ଏଇଠୁ ଘରକୁ ବାହୁଡ଼ିବି । ତୁଣ୍ଡକୁ ଗାଁ ଗାଁ ବୁଲି ଖାଲି ଖବର କାଗଜରେ ବିବୃତି ପ୍ରକାଶ କରେଇବାର ଆତ୍ମପ୍ରତାରଣାକୁ ମୁଁ କଦାପି ବରଣ କରି ପାରିବି

ନାହିଁ । ଯାଅ, ତୁମେ ନଅ ଏ ସବୁ । ଆଗ ପିଲାଙ୍କୁ ଖୁଆଇ, କିଛି ନିଜେବି ଖାଇନିଅ । ମୁଁ ହେଇ ସେ ବରଗଛ ତଳେ ବସିଛି । ତୁମେ ସେଠିକି ଆସ । କଥାବାର୍ତ୍ତା କରି କିଛି ବିଚାର କରିବା ।

ବରଗଛ ତଳେ ବସିବା ପୂର୍ବରୁ ବନସ୍ତ ଉଠିଗଲା ପାହାଡ଼ର ଶିଖର ଦେଶକୁ । ଚାରିଆଡ଼େ ଶିକାରୀ ଭଳି ତାର ତୀକ୍ଷ୍ଣ ଦୃଷ୍ଟି ଖେଳି ବୁଲିଲା । ଆଉ କିଛି ସମୟ ଏଣେତେଣେ ବୁଲାବୁଲି କରି ସାରିବା ପରେ ସେ ଫେରି ଆସି ବରଗଛ ମୂଳେ ବସିଲା ।

ଟିକିଏ ରନ୍ଧା ପାଳୁଅ, ଖଣ୍ଡେ ପାଉଁରୁଟି, ଦିଟା ବିସ୍କୁଟ ଖାଇ ଟିକିଏ ପାଣି ପିଇସାରିବା ପରେ ସତକୁ ସତ ହରି ପନ୍ଦରା ବେଶ୍ ସୁସ୍ଥ ହୋଇଗଲା । ପିଲାଗୁଡ଼ିକ ବି କିଛି କିଛି ଖାଇଦେଇ ଗୁହାଇ ତଳ ଥଣ୍ଡା ଘାସ ଉପରେ ଗଡ଼ିବାକୁ ଲାଗିଲେ । ପ୍ରାୟ ଛ ମାସର ନିର୍ଯ୍ୟାତନା ପରେ ଆଜି, ଏହି ମୁହୂର୍ତ୍ତରେ ମାଡ ପୁଅ ଝିଅ ଓ ରୁଗ୍‌ଣା ମାଇପର ଶୁଖିଲା ମୁହଁରେ କଅଁଳ ହସର ଲହର ଦେଖି ହରି ପନ୍ଦରା ଅତ୍ୟନ୍ତ ବିସ୍ମିତ ହୋଇ ପଡ଼ିଲା । ତାକୁ କେମିତି କେମିତି ନିଦେ ପବନରେ ଫୁଲ ଦହଲିଲା ଭଳି ଦହଲୁ ଥିଲା ପରି ଲାଗିଲା ।

କେତେ ମିନଟ୍ ଗୁଡ଼ିକ ଗଲା ।

ଦିହେଁ ମରିବରେ ବସି ରହିଥିଲେ ।

'ଆଚ୍ଛା ହରି, ଏହି ପାହାଡ଼ ଜଙ୍ଗଲରେ ମଣିଷ ଠାରୁ ଆହୁରି ନିପାରିଲା, ନବୁଝିଆ ଅନେକ ଜନ୍ତୁ ତ ବଞ୍ଚି ରହିଛନ୍ତି ।'

'ହଁ ବାବୁ ।' ହରି ଉତ୍ତର ଦେଲା ।

ଘୋର ଚିନ୍ତା ପରେ ଗମ୍ଭୀର ସ୍ୱରରେ ବନସ୍ତ କହିଲା, 'ସେମାନଙ୍କର ତ ସଞ୍ଚିତ ପଦାର୍ଥ କିଛି ନାହିଁ କିମ୍ବା ସେମାନେ କେବେ

ମଧ୍ୟ ସରକାର କମ୍ପା ଇତର ପ୍ରାଣୀ ନିକଟରେ କେବେ ହାତପାତ ଗୋଡ଼ ଭାଙ୍ଗି ଠିଆ ହେଉନାହାନ୍ତି ଏବଂ କେବେବି ସେମାନେ ଭୋକରେ ମରନ୍ତି ନାହିଁ ।'

'ନାହିଁ ତ !'

'ଆଉ ତମେ ସେମାନଙ୍କ ଠାରୁ ଢେର ଢେର ଉତ୍ତମ ମଣିଷ ଜନମ ପାଇ ଭୋକରେ ମରିବ କାହିଁକି ?'

'ଆଉ କଣ କରିବୁ ?'

'ସେଇ⋯ସେଇ ପ୍ରଶ୍ନର ମୁହଁକୁ ତମେ ଅନ୍ୟମାନଙ୍କ ଆଡ଼େ ବୁଲେଇ ରଖିବାର ଅଭ୍ୟାସ ଛାଡ଼ ନିଜ ଆଡ଼କୁ ସିଧା ରଖ । ଉତ୍ତର ମିଳିବ । ମଣିଷ ବୋଧହୁଏ ଯେଉଁ ଦିନଠାରୁ ପରମୁଖାପେକ୍ଷୀ ହେବାର ଅଭ୍ୟାସ କଲା, ସେଇ ଦିନଠୁଁ ତାର ଏ ଦୁର୍ଦ୍ଦଶା । ସତେ କଣ ତମେ ଧୀରସ୍ଥିର ଅବିଚଳିତ ଭାବରେ ଯଦି ଆନ୍ତରିକ ଉଦ୍ୟମ କରିବ, ତମର ପେଟ ଅପୋଷା ରହିଯିବ ?'

'ବାବୁ !'

'ଆସ ମୋ ସଙ୍ଗରେ । ଆଜି ଆମେ ଗୋଟିଏ ପରୀକ୍ଷା କରିବା ।'

ଆଗେ ଆଗେ ବିନସ୍ତ । ପଛେ ପଛେ ହରି ପନ୍ଦର । ଚାଲିଲେ ପାହାଡ଼ର ଆର ପାଖକୁ, ଜଙ୍ଗଲ ତଳକୁ । ଝରଣା କୂଳେ କୂଳେ ପାଖ ଗାଁକୁ ଯେଉଁଠୁ ଜଙ୍ଗଲିଆ ଶଗଡ଼ ବାଟ ଆରମ୍ଭ ହୋଇଛି, ସେଇଠି ଦିହେଁ ଠିଆ ହୋଇ ଅନେକ ବିଷୟର ଆଲୋଚନା କଲେ ।

ଏ ଭିତରେ କୋଡ଼ିଏ ଦିନ ବିତି ଗଲାଣି । ବିନସ୍ତ ଥରେମାତ୍ର ଭବାନୀପାଟଣା ଯାଇ ବସ୍ତେ ଚାଉଳ, ବସ୍ତେ ଅଟା କିଛି ଅନ୍ୟ ଉପକରଣ ନେଇ ଆସିଥିଲା । ସେତିକରେ ହରି ପନ୍ଦରର ପରିବାର

ଖାଇପିଇ ବେଶ୍ ସୁସ୍ଥ ସବଳ ହୋଇ ଉଠିଛନ୍ତି । ପାହାଡ଼ ଢାଲୁରେ ସୁନ୍ଦର କୁଡ଼ିଆ ଘର ଓ ପନି ପରିବା ବଗିଚାଟିଏ ଗଢ଼ି ତୋଳିଛନ୍ତି । ନାଳ ଖୋଳି ତେଣ୍ଡା ବସେଇଛନ୍ତି ।

କିଛି ଗୃଉଳ ଓ ଅଟା ବିନମପୁରେ ପାଖ ଗାଁରୁ ହଳିଆ ମୂଲିଆ ଲଗେଇ ସେମାନେ ସୁନ୍ଦର ଧାନ କିଆରି ବନେଇ ଖରାଦିନିଆ ଆମ୍ବଧାନ ବି କେତେ କିଆରି ବୁଣି ଦେଇଛନ୍ତି । ଆଖୁ ଓ କଦଳୀ ଲଗେଇଛନ୍ତି ।

କଖାରୁ, ଲାଉ, ତରଭୁଜ, କାକୁଡ଼ି, ଶାଗ, ବାଇଗଣ, ଟମାଟୋ, ବୁଟ ଇତ୍ୟାଦି ପନି ପରିବା ଗଛଗୁଡ଼ିକ କେଡ଼େ ସୁନ୍ଦର ବଢ଼ି ଉଠିଲିଣି ।

ବିନସ୍ତୁ ଏହାପରେ କଳାହାଣ୍ଡି ଯାଇ ଗୋଟାଏ ପରେ ଗୋଟାଏ ପ୍ରାୟ ପଚିଶ ସରିକି ବିପନ୍ନ ପରିବାରଙ୍କୁ ଏଠାରେ ଥଇଥାନ କରାଇବାରେ ଲାଗି ପଡ଼ିଛି ।

ହରି ପନ୍ଦରା ଏମାନଙ୍କର ନେତୃତ୍ୱ ନେଇ ସମସ୍ତଙ୍କ ଦୈନନ୍ଦିନ କର୍ମଧାରାର ନିର୍ଦ୍ଦେଶ କରୁଛି । ବିନସ୍ତୁ କେବଳ ପ୍ରାଥମିକ ସାହାଯ୍ୟର ବନ୍ଦୋବସ୍ତ କରି ଦେଉଛି । କୁକୁଡ଼ା, ଛେଳି, ମେଣ୍ଢା କେତେ ମଧ୍ୟ ସେ ସଂଗ୍ରହ କରି ଯୋଗାଇ ଦେଇଛି ।

ଦୁଇ ମାସ ପରେ ବିରାଟ ପରିବର୍ତ୍ତନ !

'ମଣିଷ ବଞ୍ଚି ରହିବା ପାଇଁ ଯେ କୌଣସି ପରିସ୍ଥିତିରେ ମଧ୍ୟ ପର ଉପରେ ନିର୍ଭର କରିବାର ପ୍ରୟୋଜନ ନାହିଁ ।'

ବିନସ୍ତୁ ଦୃଢ଼ତାର ସହିତ ଆଜି ଘୋଷଣା କରିଛି ।

ମହିଳା କଲେଜ ।

ଏକ ନମ୍ବର ହୋଷ୍ଟେଲ ।

ଲୀଳା ଗୀତାର କୋଠରୀ ଭିତରକୁ ଜଣେ କେଉଁ ନିଜ ଘରକୁ ଯାଉଥିଲା ଭଳି ପଶିଗଲା, ଚାରିଆଡ଼କୁ ମୂରଚ୍ଛ ଆଖିରେ ଅନେଇ ଅନେଇ । ଯେମିତି କ ସେ ଭୁଲ୍‌ଗୁଡ଼ିକୁ ଖୋଜୁଥିଲା !

'ଫୁଲ ଫୁଲ ଫୁଲ··· ଚାରିଆଡ଼େ ଖାଲି ଫୁଟିଲା ଦର ଫୁଟିଲା ଫୁଲ—ସର୍ବସାଧାରଣଙ୍କର ଗ୍ରୁପ୍ ମିଟିଂ ଚାଲିଛି ଯେମିତି ! ଓଃ ଗୀତା··· କୁଆଡ଼େ ଗଲୁ ନା ମଲୁ··· ଏ ଗୀତା···'

ଡାକ ପକେଇ ପକେଇ ଲୀଳା ସେ ଘରର ଏକମାତ୍ର ଅଣ ଆଉଜା ଆମି ଚଉକିଟି ଉପରେ ଗଡ଼ି ପଡ଼ିଲା ।

ଓଦା ସର ସର ଦେହରେ ଗାଧୁଆ ଘରୁ ଚାଲି ଆସୁ ଆସୁ ଗୀତା କହିଲା—ଜୀବନ ଗୁଡ଼ି ଯାଉଥିଲା ପରି ଏତେ ଫଟେଇ ହେଉଚୁ କାହିଁକି ? ଦି ମିନିଟ୍ ଭଲା ଥୟ ହୋଇ ବସି ପାରୁନୁ ? ଆଉ ଜୀବନରେ ତୋ ଦେଇ କଣ ହୋଇପାରିବ କେଜାଣି, ଏତେ ଅଧୀର··· ବାପ୍‌ରେ ବାପ୍··· ।

'ଓଃ ମହାଦେଈ ଯାଇଥିଲେ ମାଜଣା ହେବାକୁ ନା ? ହୋଇନେ ଏଠା ହୋଷ୍ଟେଲ ନା କାହାର ବାସର ଘର ? ଏ ଫୁଲର ପସରା କଣ ?'

'ତୋର ସ୍ୱଭାବ ଭୁଲ୍ । ଦୃଷ୍ଟିକୋଣ ବି ଭୁଲ୍ । ଜୀବନ ଆଉ ଫୁଲ — ଦୁଇ ବିକଶିତ ବା ବିକଶିତ — ପାର୍ଥକ୍ୟ ନାହିଁ । ଏକ ।'

'ଓଃ...' ଲୀଳା ପରିହାସ ରଞ୍ଜିତ ହସରେ ଘର ଫଟେଇ ଦେଲା । ଆଃ କି ଉଲ୍ଲାସ ଉଶ୍ୱାସ ସେ ହସର ପରଶ !

ଗୀତା ଆଉ ଲୀଳା । ବୟସ ସମାନ । ପିଲାଦିନୁ ଏକା ବିଦ୍ୟାଳୟରେ ପାଠ ପଢ଼ି ଆସିଛନ୍ତି । ଏବେ ଏକା ହୋଷ୍ଟେଲରେ ରହି ପଢୁଛନ୍ତି ଏମ୍. ଏ. । ୯ଇ ଆସନ୍ତା ମାହରେ ଶେଷ ପରୀକ୍ଷାଟା ଦେଇସାରି ଯେ ଯାହା ଘରକୁ ଫେରିବେ । କର୍ମକ୍ଷେତ୍ର ବାଛି ନେବେ । ଆରମ୍ଭ କରିବେ ନାରୀ ଜୀବନର ଦ୍ୱିତୀୟ ଅଧ୍ୟାୟ ।

'ଆଚ୍ଛା ଗୀତା, ଏହାପରେ ବି ଆମେ ଏକାଠି ରହିବା, ଏକାଠି ଶୋଇବା, ଏକାଠି ଖାଇବା, ଖେଳିବା ଆଉ ହସିବା । ଏହା ସ୍ଥିର ତ ?' ଲୀଳା ଗୀତାର ଫୁରୁଫୁରୁ କୁଞ୍ଚକୁଞ୍ଚିଆ ବାଳ କେଶଗୁଡ଼ିକୁ ସଜାଡ଼ୁ ସଜାଡ଼ୁ କହିଲା ।

'ଉହୁଁ । କେମିତି ହେବ ?'

ଗୀତା ଲୁଗା ବଦଳାଇବା ପାଇଁ ଆଡ଼େଇ ହୋଇ ଚାଲିଗଲା ।

'କି କାହିଁକି ହେବ ନାହିଁ !'

ଲୀଳା ଆହୁରି ଜୋର୍ ଦେଇ ପଚାରିଲା, ମୁଁ ମୁସଲମାନ ବୋଲି ? ତୁ ହିନ୍ଦୁ ବୋଲି ?

ଗୀତାର ଚକା ଚକା ଅଳଅଳ କଳା କଳା ଆଖି ଯୋଡ଼ିକ ତଳ ଉପର ହୋଇ ବୁଲିଲା ଲୀଳାର ଦେହ ସାରା । ହୋଧାନ୍ୱିତ ପ୍ରକୃତି

ଲୋମକୂପ ତାର ସତେ ଯେମିତ ସହସ୍ରେ ଯୁଗର ପୁଞ୍ଜିଭୂତ ଅଗ୍ନିକଣା ବହୁରିତ କରିବାକୁ ଲଗିଲେ ଏଥର ।

'ଲୀଳା ! ପାରିବ ନାହିଁ ବୋଲି ସିନା ନ ହେଲେ ଏକ୍ଷଣି ତୋତେ କଣ କରିଥାନ୍ତି ଜାଣୁ ? ପିନ୍ କଣ୍ଟାରେ ତୋର ଦେହସାରା ଫୋଡ଼ି ଫୋଡ଼ି ଚିକି ଚିକି କରି ଚିରି ପକାନ୍ତି, ତୋତେ ପ୍ରାଣରେ ମାରି ତୋର ହାଡ଼ ମାଉଁସ ସବୁ ଓଲଟି ପକାନ୍ତି । ଅନ୍ତପୁଟା ବିଦାରି ଦିଅନ୍ତି ନଖରେ !

ଗୀତା କାନ୍ଦି ପକେଇ ଆତୁର କହିଲା, ଭୁ···ଭୁ···'ଲୀଳା··· ଭୁ ସେହି ଲୀଳା···ପିଲାଟି ଦିନରୁ ଏକା ମାଁ ପେଟର ଦି ଭଉଣୀଠୁଁ ବଳି···ମଣିଷ ଜନ୍ମର ଗର୍ବ ଓ ଗୌରବମୟ ଅଯାଚିତ ଆଲିଙ୍ଗନ ଆଣିଦିଏ ଯେଉଁ ଭେଦଶୂନ୍ୟ, ଅହଙ୍କାରଧ୍ୱାନ ଆଚରଣ, ତାରି ଭିତରେ ଆମେ ଦିହେଁ ଏକ ମନ ପ୍ରାଣରେ ନିଜ ନିଜକୁ ବିଲୀନ କରିଦେଇ···ଭୁ···ସେହି ଲୀଳା, ମୋତେ ଆଜି ପଚାରି ପାରିଲୁ ଏ ପ୍ରଶ୍ନ ? ତୋର ଜିଭ ଛିଣ୍ଡିଗଲା ନାହିଁ ? ତୋ ମୁଣ୍ଡରେ ଚଡ଼କ ପଡ଼ିଲା ନାହିଁ ? ଲୀଳା···କଳୁଷିତା ଲୀଳା···ପଳା ଲୀଳା ଭୁ, ପଳା ଏଠୁ···ଅବିଳମ୍ବେ ପଳା !

ବଦନ ମୁଖର ଗୀତାର ଏ କରୁଣ ତିରସ୍କାରରେ ଲୀଳା ଖାଲି ଛଳଆଁ ହୋଇ କାନ୍ଥ କୋଣରେ ଠିଆ ହୋଇ ରହିଲା । ତା ମୁହଁରୁ ଆଉ କଥା ବାହାରିଲା ନାହିଁ । ଦୁଇ ଆଖିରୁ ଫିଟିଗଲା ଲୁହର ଝରଣା ! ସେ ପୁବହନ୍ତା ଅପରାଧିନୀ ଜନନୀର ଭୟାକୁଳ ମନରେ ଠିଆ ଠିଆ ଥରିବାକୁ ଲଗିଲା । ସେ କଣ ଏମିତ କହି ପକେଇଲା ନିଜେ ବୁଝି ପାରିଲା ନାହିଁ ।

ଲୀଳା ମୁସଲମାନ ଘରେ ଜନ୍ମ ହୋଇଚି ସତ ହେଲେ କୋଡ଼ିଏ ବର୍ଷ ହେଲା ଏ ସଂସାରରେ ଆତଯାତ ହେଲାଣି ସିନା ଦିନେ ବି

ସେ ନିଜକୁ ଗୀତା ଠାରୁ ଭିନ୍ନ ବୋଲି ଭାବୁଥିଲା ନାହିଁ, କିଛି କରି ନାହିଁ, କହି ନାହିଁ । କିନ୍ତୁ ଆଜି କାହିଁକି ଏ ଶୋଚନୀୟ ପତନ ?

ସେ କିଛି ବୁଝି ପାରିଲା ନାହିଁ । ବେଳକୁ ବେଳ ଖାଲି ଆତଙ୍କିତ ହୋଇ ପଡ଼ିଲା । ସତରେ ସେ କଣ କହି ପକାଇଲା ?

କିଛି ସମୟ କଟିଗଲା ।

ନିସ୍ତବ୍ଧ ନୀରବତାର ଶୀତଳ ଆଲିଙ୍ଗନରେ ଭ୍ରସମାନ ଯୋଡ଼ ଭଳି ବଦଳିବାକୁ ଲାଗିଲା ସମସ୍ତ ପରିବେଶ, ସମଗ୍ର ବାତାବରଣ ।

ଆସ୍ତେ ଆସ୍ତେ ଗୀତା ଆଉ ଲୀଳା ଅନୁଭବ କରିବାକୁ ଲାଗିଲେ ଯେ ତାଙ୍କ ଭିତରେ କିଛି ଗୋଟାଏ କ୍ରମଶଃ ତରଳ ତରଳ କୌଣସି ସୁପ୍ରଶସ୍ତ ପ୍ରଶାନ୍ତ ସ୍ନିଗ୍ଧ ପଦାର୍ଥରେ ମିଶିଲେଇ ମିଳେଇ ଯାଉଛି । ଏକ ଅଜଣା ଉଲ୍ଲାସର ଉଚ୍ଛ୍ୱାସ ସେମାନଙ୍କୁ କ୍ରମେ ସୁସ୍ଥ ସଚେତ କରି ଦେଉଛି । କେମିତି ଗୋଟାଏ ଲାଗୁଛି ତ !

ଅନେକ ସମୟ ପରେ କୁଣ୍ଠିତ ମନରେ ନୀରବତା ଭଙ୍ଗ କରି ଗୀତା କହିଲା, ଆଉ କେତେ ସମୟ ଏପରି ଠିଆ ହୋଇ ରହିବୁ ? ଜଳଖିଆ ଖିଆ ହେଇଚି କି ? ଚାଲ୍ ସେ ଘରକୁ ।

କିଛିକ୍ଷଣ ସକ୍ଷମ ଯନ୍ତ୍ରଟିଏ ଭଳି ଲୀଳା ଅଗ୍ରସର ହେଲା । ଗୀତା ଚାଲିଲା ପଛେ ପଛେ । ପିଠିରେ ବେଣୀଟି ତାର ଫଣା ଟେକିଥିଲା ।

ଆଉ ଏକ ଘଣ୍ଟା ଏକାଠି ବସିଲା ପରେ ଗୀତା କହିଲା, ଯାହାହେଉ ଗୋଟାଏ ବୁଝାମଣା ହୋଇଗଲା ତ !

'ବଞ୍ଚିଗଲି' ଲୀଳା ହସିଲା ।

'ଗୋଟାଏ ବଡ଼ ଭୁଲ୍ ହୋଇଗଲା, ନୁହେଁ ?'

'ହଁ, ହେଇଗଲା ଏବଂ ଆଉ କେବେ ହୋଇ ପାରିବ ନାହିଁ ।'

'ଠିକ୍ ।'

ତଇଳ ସୂର୍ଯ୍ୟର ପରଶ କ୍ରମେ ରୂପାନ୍ତରିତ ହୋଇ ଆସୁଥିଲା ଝାଞ୍ଜି ଖରାର ତରାଣିଆ ପ୍ରକୋପରେ । ହୋଷ୍ଟେଲ ଉପବନର ଆମ୍ବ ଗଛ ତଳେ ଶୀତଳ ଛାଇର ସଘନ ଆସ୍ତରଣ ହୋଇ ଉଠୁଥିଲା ଶୀତଳତର । ଲୀଳା ପୁଣି କହିଲା, ଆଜି ଆଉ ପଢ଼ାପଢ଼ି ହେବ ନାହିଁ ନା ? ମୁଣ୍ଡ ଗରମ ହୋଇ ଯାଇଚି ?

'ହେବ କଣ ହେଉ, ଗୀତୁ ପାଠ ପଢ଼ା । ଏଇଠି ଆରମ୍ଭ ହୋଇଯାଉ । ବହି ଆଣିଚୁ ତ ?'

ପଢ଼ା ଆରମ୍ଭ ହୋଇଗଲା ।

ଆଳାପ ରହିଲା ସେତିକରେ ।

ସଞ୍ଜବେଳଆ ମାଳତୀ ଲଟା ତଳର ଛାଇରେ ଦୁଇଟି ବେଞ୍ଚ ଚଉକୀ । ଉପବନର ଏଇ ପ୍ରାନ୍ତଟି ଭାରି ନିଛାଟିଆ । ଗୋଡ଼ ହଲେଇ ହଲେଇ ପରୀକ୍ଷା ହଲ୍‌ର ବୃତ୍ତାନ୍ତ କହି ସାରିବା ପରେ ଲୀଳା ପଚାରିଲା, ଆଚ୍ଛା ଏଥର କଥାଟା ପରିଷ୍କାର ହୋଇଯାଉ ।

ଗୀତା ସେତେବେଳକୁ ପାଖ ଗୋଲାପ ଗଛରେ ବୁଢ଼ୀବୁଢ଼ିଆଣିର ଜାଲ ରଚନା କୌଶଳକୁ ମନଦେଇ ନିରେଖୁଥିଲା ଆଉ ଫୁଟୁଥିଲା ଫୁଲ ଗଛଟିର ନବପତ୍ର ଏବଂ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଏହା ଭଲ ନା ମନ୍ଦ ? ନା ନା ପ୍ରଶ୍ନ ତା ମନରେ ଉଠୁଥିଲା, ଫଳ ଡାଳର କଅଁଳିଆ ପତ୍ରଗୁଡ଼ିକୁ ଯେଉଁ କୀଟଗୁଡ଼ିକ ଖାଇଖାଇ ଖାଇଖାଇ ଖଣ୍ଡିଆ କରି ପକାଉଛନ୍ତି, ସେଗୁଡ଼ିକୁ ଏ ଖାଇ ଦେଇପାରେ କିମ୍ବା ଯେଉଁ ମାଛିମାନେ ଏଗୁଡ଼ିକୁ ଖାଇବାକୁ ଆସି ପାରନ୍ତି, ସେମାନେ ଏହା ଜାଲରେ ପଡ଼ିଯାଇ ପାରନ୍ତି । ଇତ୍ୟାଦି ।

ତା କଥା ନ ଶୁଣିବା ଦେଖି ଲୀଳା ଟିକ୍ ଟିକ୍ ଗଳାରେ ପୁଣି ପଚାରିଲା, ଗୀତା ତୁ ଏମିତି କଣ ହେଉଚୁ ? ଉତ୍ତର ଦେବୁନି କି ?

'କଣ ହେଲା କି ?' ଗୀତା ଭିତରୁ ଉଠିଲା ପରି ପଚାରିଲା ।

ଲୀଳା ତାର ସୁନ୍ଦରତର ଉଜ୍ଜ୍ୱଳ ମୁହଁରେ ସତେଜ ଗୋଲାପ ରଙ୍ଗର ଅଭିମାନଆ ବର୍ଣ୍ଣ ଉକୁଟେଇ କହିଲା, ପଚାରୁଚ ପରା, ସବୁଦିନ ପାଇଁ ଆମେ ଏକାଠି ରହିବା ତ ?

ଟିକଏ ହସିବାର କଟସାରେ ଗୀତା କହିଲା, କେମିତି ସମ୍ଭବ ?

କାହିଁକି ନାଇଁ ?

ମୁଁ କଣ ଆଉ ତୋତେ ବିବାହ କରିବି ?

କାହିଁକି ବିବାହ କରିବୁ ନା !

ଜୀବନକୁ ପରିପୂର୍ଣ୍ଣ କରିବା ପାଇଁ ସେ ଏକ ପ୍ରୟୋଜନ ।

ଭୁଲ୍ ।

ନା ।

ନିଶ୍ଚୟ ।

ଦୁହେଁ ନୀରବ ହୋଇଗଲେ । ସେତେବେଳେ ସେ ଦୁ ଜଣଙ୍କୁ ଯଦି ତାଙ୍କର କେହି ଅଧ୍ୟାପିକା ଦେଖିଥାନ୍ତେ, ଭାବିଥାନ୍ତେ ଏ ଦୁଇଟା ଚିନ ପାଞ୍ଜିରୁ ଗଲେ । ଏତେ ବଡ଼ ପରୀକ୍ଷା ଖୋଲିଛି, ଅଥଚ ଏ ଦୁଇଟାଯାକ ସାରା ଟେବେଲଯାକ ସମୁଦ୍ର ପହଁରେ ମାତିଛନ୍ତି ! କାରଣ ସେତେବେଳେ ସେମାନଙ୍କର ଚେହେରା ଯେ ରୂପ ଧାରଣ କରିଥିଲା, ସେ ରୂପର ପରିପ୍ରକାଶ କେବଳ ଘଣ୍ଟା ଘଣ୍ଟା ବ୍ୟାପି ସମୁଦ୍ର ପହଁରୁ ଫେରିଥିବା ଉଲ୍ଲସିତ ତନୁ ମନ ପକ୍ଷେହିଁ ସମ୍ଭବ । ସତେ ଯେମିତି ଉପବନର ଏକ ପ୍ରାନ୍ତରେ ଦୁଇଟି ସୁନାର ସଳିତା ଜଳୁଚି ! ମୈତ୍ରୀର ଜ୍ୟୋତି ଝରୁଛି ।

ବିବାହ-ବୟସ୍କା ଏ ତରୁଣୀ ଯୁଗଳ ନିଜ ନିଜ ଜୀବନର ଯୁଗ୍ମ ଭବିଷ୍ୟତ-ଦର୍ଶନ ପାଇଁ ଅନ୍ତରାତ୍ମାର ଗଭୀରତରେ ଏପରି ନିବିଡ଼ ଭାବରେ ବୁଡ଼ି ଯାଇଥିଲେ ଯେ, କିଛି ସମୟ ପାଇଁ ତାଙ୍କର ଶାରୀରିକ ଅବସ୍ଥିତି ଏକ ଜ୍ୟୋତିର୍ମୟ ତରଳ ସ୍ତୂପ ପରି ପ୍ରତୀୟମାନ ହୋଇ ଉଠୁଥିଲା କହିଲେ ବେଶି ଅତ୍ୟୁକ୍ତି ହେବନାହିଁ ।

'ଆଚ୍ଛା, ମୁଁ ଗୋଟିଏ ପ୍ରସ୍ତାବ ଦେବି ।' ଗୀତା ତା ଜିଭ ଅଗରୁ ଝରି ପଡ଼ୁଥିବା ସୁସ୍ୱାଦୁ ଲାଳରସ ଢୋକିଦେଇ କହିଲା ।

'କଣ ?' ପଚାରିଲା ଲୀଳା ।

'ଆମେ ଦି ଜଣଯାକ ଗୋଟାଏ ପୁରୁଷକୁ ବାହା ହୋ'ଇ ପଡ଼ିଲେ ତ ପ୍ରଶ୍ନର ତୁରନ୍ତ ଏବଂ ସୁନ୍ଦର ସମାଧାନ ହୋଇଯିବ ।'

ହିଁ ହିଁ ହୋଇ ହସି ଉଠିଲା ଲୀଳା । ବର୍ଷା ଦିନଆ ଅଗଣାର ନର୍ଦ୍ଦର ଉପ୍ରରଣିକୁ ବାଳକ ବାଳିକାମାନେ ପାଦରେ ଦବେଇ ରଖିଲା ପରି, ଏ ହସର ବେଗକୁ ଓଠରେ ଚୁପିରଖି ଲୀଳା କହିଲା, ଗୋଟାଏ ଲମ୍ବା ସର୍କସ ଦେଖେଇବାକୁ ତୁ ଏ ମଣିଷ ଜନ୍ମ ନେଇଚୁ ନା କଣ ?

'ନାଇଁ; ଏକ ବିଚ୍ଛେଦ ବିଧୁର ନାଟକରେ ଖାଲି ଅଯୋଗ୍ୟ ଅପଦାର୍ଥ ନାୟିକା ଭଳି ଅଭିନୟ କରିବାକୁ !' ଗୀତା ଟିକିଏ ଜୋର୍‌ରେ ଏଥର କହିଲା ।

'ଦେଖ୍ ଗୀତା, ସତରେ ତୁ ଯଦି ବିବାହ କରିବୁ, ମୁଁ ବଡ଼ ଦୁଃଖୀତ ହେବି ।'

କାହିଁକି ?

ତୋର ଦୁଃଖରେ ।

ମୋର ଦୁଃଖ ହେବ କାହିଁକି ?

ବୈବାହିକ ଜୀବନରେ ଦୁଃଖ କଣ ଏତେ ମହତ୍ତ୍ୱ ରଖିଛି ? ହିସାବ କରି କହୁଛି । କେତେ ଦୁଃଖ ତୁ ପାଇବୁ ଆଜଠୁ ମୁଁ ହିସାବ ଦେଇ ଦେଉଛି ।

କହ ତ ଦେଖି ।

ଦେଖ୍, ସ୍ୱାମୀଙ୍କ ସହ ମତଭେଦ ହେବ । ସେ ରୋଗରେ ପଡ଼ିବେ । ହୁଏତ ମାତାଲ ଅବସ୍ଥାରେ ପରକୀୟା ପ୍ରୀତିରେ ପଡ଼ି ତୋତେ ଚିହ୍ନିବେ ନାହିଁ । ବାଡ଼େଇ ବାଡ଼େଇ ତୋର ପିଠି ଫଟେଇ ଦେବେ । କାନ୍ଦି କାନ୍ଦି ତୋର ଦିନ ସରିବ ନାହିଁ ।

ତୋ ସ୍ୱାମୀଙ୍କୁ କୁଷ୍ଠ ହୋଇପାରେ, ଯକ୍ଷ୍ମା ବି ଆକ୍ରମଣ କରିପାରେ । ସେ ମରି ବି ଯାଇପାରନ୍ତି ଅଧା ବୟସରେ ।

ତୋ ପୁଅ ପାଗଳ ହେବ । ତୋ ଝିଅର ଗୋଡ଼ ଭାଙ୍ଗିବ । ତୋର ବଡ଼ ଝିଅଟି ମରିଯିବ । ଏପରି ଏପରି ହଜାରେ ।

ଗର୍ଜି ଉଠିଲା ଗୀତା, କାହିଁକି ଏ ସବୁ ହେବ ।

ଯାହା ହୁଏ ଏବଂ ଯୁଗ ଯୁଗ ଧରି ହୋଇ ଆସିଛି, ତାହାହିଁ ମୁଁ କହୁଛି ଗୀତା, ନୂଆ କଥା କିଛି କହୁନାହିଁ ।

'ତୁ ଗୋଟାଏ କପଟ ଅମଙ୍ଗଳ । ତୋତେ ଭଲ କଥା ଜମା ଆସେ ନାହିଁ । ମୋର କୌଣସି ଦୁଃଖ ହେବ ନାହିଁ । ଏ ଆତ୍ମବିଶ୍ୱାସ ମୋର ଅଛି ।'

'ମୋ ବୋଉର ବି ଏପରି ଦୃଢ ଆତ୍ମବିଶ୍ୱାସ ଥିଲା । କିନ୍ତୁ...'

'କେବଳ ତୋ ବୋଉ କାହିଁକି ? ମୋ ବୋଉ, ସମସ୍ତଙ୍କର ବୋଉ, ସ୍ୱୟଂ ଭଗବାନଙ୍କ ଅବତାରମାନଙ୍କ ବୋଉମାନେ ବି ସେପରି ଦୁଃଖ ପାଇଥିଲେ ।'

'ଆଜ ତୁ କେମିତି କହୁଛୁ ?'

'ବେଶ୍ ଜାଣି ଶୁଣି କହୁଛି ଯେ, ମୁଁ ଜମା ଦୁଃଖ ପାଇବି ନାହିଁ !'

ଦୁଃଖକୁ ଦୁଃଖ ବୋଲି ଯିଏ ମାନି ନଏ, ଭିତରେ ଓ ବାହାରେ ସ୍ୱୀକାର କରିନଏ, ସେ ସିନା ଦୁଃଖ ପାଏ ଲୀଳା, ମୁଁ ଯଦି ତଥାକଥିତ ସକଳ ସାଂସାରିକ ଦୁଃଖ ସୁଖ ଉପରେ ଉଠିବି ତା ହେଲେ ?

'ଏଁ ?' ଲୀଳା ଗୀତାର ପ୍ରଜ୍ୱଳିତ କାନ୍ତି-ଉଦ୍‌ଭାସିତ ମୁଖମଣ୍ଡଳକୁ ଚାହିଁ ରହିଲା ।

ରଜାଟିଏ ଗୃହଲତା ସେ ଦିନ ପ୍ରଶାନ୍ତ ମହାପାତ୍ରଙ୍କୁ ଦେଖିବା ମାତ୍ରେ ବିସ୍ମିତ ହୋଇ କହିଲା, କି ଆଶ୍ଚର୍ଯ୍ୟ! ପ୍ରଶାନ୍ତ ବାବୁଙ୍କ ନିତ୍ୟ ପ୍ରଶାନ୍ତ ମୁହଁରେ ଆଜି ଉଗ୍ରତାର ସୂଚନା! କପଟ ?

ପିଣ୍ଡା ତଳର କଣ୍ଟକିତ ସବୁଜ ପ୍ରଶାଖା ମଣ୍ଡିତ ବଡ଼ ବଡ଼ ଗୋଲାପ ଫୁଲଗୁଡ଼ିକ ଉପରେ ତୀକ୍ଷ୍ଣ ଦୃଷ୍ଟି ନିବଦ୍ଧ ରଖି ପ୍ରଶାନ୍ତ କହିଲା, ବନ୍ଧୁ ଭାବରେ ସଂପୃକ୍ତ ପ୍ରତ୍ୟେକ ନରନାରୀ ପରସ୍ପରର କ୍ରିୟା କଳାପ, ସମ୍ବନ୍ଧ ସମନ୍ୱୟ ଉପରେ ନିର୍ଭରଶୀଳ କିନା! ସେଥିପାଇଁ ଆପଣଙ୍କ ଜୀବନର କୌଣସି ଅଶାଧୁତ୍ୱ ବ୍ୟତିକ୍ରମ ମୋ ମାନସିକ ବିକାଶ ଧାରାକୁ ପ୍ରଭାବିତ ବା ଆଲୋଡ଼ିତ କରିବା ଆଶ୍ଚର୍ଯ୍ୟ କଣ ?

ଗୃହଲତା ଚମକି ପଡ଼ିଲା ।

— ପ୍ରଶାନ୍ତ ବାବୁ! ଏବେ ମଧ୍ୟ ମୁଁ କହିପାରେ, ତୁମେ ନିଷ୍କପଟ! ତୁମେ ଶୁଦ୍ଧ ସୁବର୍ଣ୍ଣ! କିନ୍ତୁ ମୋତେ ସନ୍ଦେହ କରିବାର କାରଣ ?

—ସନ୍ଦେହ ନୁହେଁ ତ ! ମୁଁ କହିଲି, ଅଣାପୂରା ବ୍ୟତିକ୍ରମ ! ପରିଷ୍କାର କଥା । ଆଦୌ ଏ ପାଖ ସେ ପାଖ ନାହିଁ ।

—ଅସମ୍ଭବ ! ତମ ଭଳି ଉଚ୍ଚମନା ଲୋକ ଆଜି ମୋତେ ଏତେ ହୀନ ଆଖିରେ ଦେଖି ପାରିଲ ପ୍ରଶାନ୍ତ ବାବୁ ! ଓଃ ମୁଁ ମରିଗଲି ନାହିଁ କାହିଁକି !

କାନ୍ଦି ପକେଇଲା ବ୍ରତୁଲତା । ହସି ହସି କହିଲା ପ୍ରଶାନ୍ତ— ବେଶ୍ ଭଲ । ମିନିଟେ ଖଣ୍ଡେ ନୁହେଁ, ଘଣ୍ଟା ଘଣ୍ଟା, ଦିନ ଦିନ, ବରଷ ବରଷ ଧରି ତୁମେ କାନ୍ଦିବା ଉଚିତ ।

'କାହିଁକି ?' ଅଭିମାନ-ଆକ୍ଷେପରେ ଗର୍ଜି ଉଠିଲା ବ୍ରତୁଲତା । କହିଲା, ଆତ୍ମବଳରେ ବଡ଼ ଲୋକ ତୁମେ । ମଣିଷ ହିସାବରେ ତୁମେ ଯଶସ୍ୱୀ । ତା ବୋଲି ଯାହା ତାହା କହି ଅନ୍ୟ କାହାକୁ ଉପହାସ କରିବା ଲାଗି ତମର କି ଅଧିକାର ଅଛି ?

—ଇଂଲଣ୍ଡ ଦେଶର ତଥାକଥିତ ଉନ୍ନତ ସଭ୍ୟତାର ଚରମ ଉଲଗ୍ନ ବାତାବରଣ ମଧ୍ୟରେ ଜଣେ ସାଧାରଣ ଘରଝିଅ ବା ଜୀବିଅର ସରଳତା ଅବଶ୍ୟ କ୍ଷମଣୀୟ । କିନ୍ତୁ ତୁମ ଭଳି ଋଷିକନ୍ୟା ସୁଲଭ ଉଚ୍ଚ ଗୁଣସମ୍ପନ୍ନା ଘରଝିଅ ତରୁଣୀଙ୍କ ପକ୍ଷେ ଏପରି ଭ୍ରଷ୍ଟାଚାର ବଡ଼ ଅଶୋଭନୀୟ କଥା !

ବ୍ରତୁଲତାର ପାତଳ ସୁନ୍ଦର ଓଠ ଦୁଇଫାଳ ଏଥର ଅସହାୟ ଭାବରେ ଥରି ଉଠିଲା । ସତେ ଯେମିତି ତାର ନାଲି ଟହ ଟହ ସୁଠାମ ଓଠର ଧାରଗୁଡ଼ିକ କ୍ରମେ କଳା ପଡ଼ିଯାଉଛି । ବହୁ କଷ୍ଟରେ ମନ ପ୍ରାଣର ସଜଳ ଉଦ୍‌ବେଗ, ଉତ୍ତେଜନା ଓ କ୍ରୋଧାବେଗକୁ ସମ୍ଭାଳି ନେଲା ପରେ ସେ କହିଲା, ଆହୁରି ମନ ପୂରିନାହିଁ ପ୍ରଶାନ୍ତ ବାବୁ ! ଯଦି ମୋତେ ଅକାରଣରେ ଗାଳି ଦେବାଟା ହିଁ ତମ ପକ୍ଷରେ

ଅଧିକ ସୁଖକର, କହ, ଯାହା ଇଚ୍ଛା କହ ! କିନ୍ତୁ ଖୋଲିକରି କୁହ, ମୋର ଅପରାଧ କଣ ? ମୁଁ କଲି କଣ ? ମୋର ଭୁଲ୍ କେଉଁଠି ?

ପ୍ରଶାନ୍ତ ମହାପାତ୍ର ଅଣଓଉଆ ପାଦାସନ ଉପରୁ ପାଦ ଦୁଇଟିକୁ ଖସାଇ ଆସ୍ତେ ଆସ୍ତେ କହିଲ, ତୁମେ ହିଁ ସେ ଦିନ ମୋତେ ଏ ଅଧିକାର ଯାଚି ଦେଇଥିଲ ନା ଗୁରୁ ? ତୁମେ ହିଁ ମୋତେ 'ହଁ' କରାଇଥିଲ, କେବେ ତୁମର କିଛି ତ୍ରୁଟି ଦେଖିଲେ ତିରସ୍କାର କରିବାକୁ !

ସ୍ୱାମୀଜିଙ୍କ ଗଳାରେ ଗୁରୁଲତା କହିଲା, କେବଳ ସେତିକି ? ମୁଁ କହିଥିଲି, ଏ ଜଡ଼ ଶରୀରକୁ ଆଶ୍ରୟ କରି ସାରିଲା ପରେ ଯେଉଁ ମହାତ୍ମା ହେଲେ ମଧ୍ୟ ପ୍ରତି ମୁହୂର୍ତ୍ତରେ ପ୍ରତ୍ୟେକ ବ୍ୟକ୍ତିର ଗୋଡ଼ ଖସି ପଡ଼ିବାର ଭୟ ରହିଛି, ଯଦି ସେପରି କିଛି ଆଖିରେ ପଡ଼େ, ସଙ୍ଗେ ସଙ୍ଗେ ଅଙ୍ଗୁଳି ନିର୍ଦ୍ଦେଶ କରିଦେବା ପ୍ରତିବେଶୀର ପରମ ଧର୍ମ !

କିନ୍ତୁ ମୋତେ ଏବେ ଏତେ ଭର୍ତ୍ସନା କରୁଛ କାହିଁକି ? କୁହ, ସିଧା ସଳଖ କହିଦିଅ, ଭୁଲ୍ କେଉଁଠି ?

—ପାଟି ଫେଁ ଫେଁ କରି ତଥାକଥିତ ଅକ୍ଷମ ବାକ୍ୟାବଳୀରେ ସେହି ସାଧୁ ବକ୍ତବ୍ୟର ଖଣ୍ଡିତ ଅଭିବ୍ୟକ୍ତି ଅନାବଶ୍ୟକ ! ସବୁ ବିଷୟ କଣ କେବଳ କଥାରେ ହିଁ କୁହାଯାଏ ?

—ଆଉ ଜାଣିବି କିପରି ?

—ସନ୍ତାନବତୀ ଜନନୀଙ୍କୁ ପଚାର । ଶିଶୁ କଥା କହି ନ ପାରୁଥିଲେ ବି ତାର ହସ, ତାର କ୍ରନ୍ଦନ, ତାର ମୁଖଭାବ, ଅବୟବର ଗୁଞ୍ଜନରୁ ସେ ତାର ସବୁ ନିର୍ଦ୍ଦେଶ, ଡାକରା, ଆବେଦନ ନିବେଦନ ବେଶ୍ ବୁଝିପାରି ଥାଏ । ତୁମେ ଜନନୀର ମନ ନେଇ ଚଳ ପ୍ରଚଳ ହୁଅ ଗୁରୁ ! ତମେ ପ୍ରତ୍ୟେକ ମଣିଷ ସନ୍ତାନର ଅକୁହା ଭାଷା ବୁଝି ପାରିବ ! ଆପଣାର ସ୍ଥିର ନିର୍ମଳ ମାନସ ସରୋବର

ଭିତରକୁ ଅକାରଣରେ ବ୍ୟସ୍ତତାର ଢେଙ୍କା ଫୋପାଡ଼ି ସେହି ସ୍ଥିର ଜଳ ସମ୍ଭାରକୁ ଗୋଳିଆ କରି ପକାଉଛ କାହିଁକି ?

ଢେଙ୍କା ଫୋପଡ଼ା ବନ୍ଦ କର । ସ୍ଥିର ଜଳରେ ପ୍ରତ୍ୟେକ କର୍ମର ପ୍ରତିବିମ୍ବ ଅନୁଧ୍ୟାନ କରି ପାରିବ । ସବୁ କଥା ଧରି ପାରିବ, ସୁଧାରି ପାରିବ !

ଗୁରୁଲତା ମୁକ ବାଉଳି ଲେକ ପରି ତଳକୁ ମୁହଁ କରି ବସି ରହିଲା । ପ୍ରଶାନ୍ତ ଖଣ୍ଡିଏ ଇଂରାଜୀ ପତ୍ରିକାର ରଙ୍ଗିନ ପୃଷ୍ଠାଗୁଡ଼ିକୁ ଓଲଟେଇବାରେ ମନ ନିବେଶ କଲା ।

ପାଞ୍ଚ ମିନିଟ ପରେ ଗୁରୁଲତା ଆସ୍ତେ ଆସ୍ତେ ମୁହଁଖୋଲି କହିଲା— ଏବେ ତ ଆପଣ ବେଶ୍ ପ୍ରଫୁଲ୍ଲ ଦେଖା ଗଲେଣି । କାରଣ ?

ଅନାଗ୍ରହ ଭାବରେ ପ୍ରଶାନ୍ତ ଉତ୍ତର ଦେଲା, ଗୋଟାଏ କର୍ତ୍ତବ୍ୟ ଯଥାର୍ଥ ଭାବରେ ତୁଲେଇ ପାରିଲା ପରେ ପ୍ରଫୁଲ୍ଲତା ଚହଟି ଆସେ ! ଦେଖୁଚନା, ଦେଖ ସେ ଆଇନାରେ··· ତୁମ ମୁହଁଟା କେମିତି ବିବର୍ଣ୍ଣ ଦିଶିଲାଣି । ଗ୍ରାସ କଲାଣି 'ବିବର୍ଣ୍ଣ ଅସୁର' ତୁମର ସେହି ସୁଶୋଭିତ ବର୍ତ୍ତୁଳ ମୁଖ ମଣ୍ଡଳକୁ !

— ପ୍ରଶାନ୍ତ ବାବୁ !

— ହଁ ହଁ ଗୁରୁ ! ତୁମେ କେଡ଼େ ଖରାପ ଦେଖା ଯାଉଛ ।

— ଅଥଚ ଖୁସି··· ଖୁସି ହେଉଛ ତୁମେ !

—ବେଶ୍, ଗୋଟାଏ କେମିତି ··ଗୋଟାଏ କେମିତି ମୁଗ୍ଧତା, କୃତଜ୍ଞତାପୂର୍ଣ୍ଣ ଆନନ୍ଦ ବିହ୍ୱଳତା ଶିଖାମେଳି ଉଠି ଆସୁଛି ଭିତରୁ !

ଗୁରୁଲତାର କେବଳ ମୁଖମଣ୍ଡଳ ନୁହେଁ, ତାର କଳା ମଚ ମଚ, କୁସୁମ ନିର୍ଯ୍ୟାସ ମିଶ୍ରିତ ତେଲାକ୍ତ ଚୂର୍ଣ୍ଣ କୁନ୍ତଳ, ତାର

ଜ୍ୟୋତିର୍ମୟୀ ଶୁଭ୍ର ଧବଳ ଶାଢ଼ୀର ସ୍ୱଳ୍ପ ଅଙ୍କନ ଶୋଭିତ ପଣତ କାନି, ତାର ଝଟକନ୍ତ ରକ୍ତିମ ଶୁଭ୍ର ନଖ କୋଣର ସତେଜତା ମଧ୍ୟ ମଳିନ ଦେଖା ଗଲାଣି । ସେ ଯେପରି ଅବଳା ସୁଲଭ ଭୟାକୁଳତା ଭିତରେ ଉଡିବାକୁ ଚାହିଁବେଇ ହେଉଛି । ଅବିଚଳିତ ସ୍ୱରରେ କଥା କହିବାକୁ ଚେଷ୍ଟା କରି ମଧ୍ୟ ଭଙ୍ଗା ଗଳାରେ କହିଲା – ପ୍ରଶାନ୍ତ ବାବୁ ! ତଥାପି ମୁଁ ତୁମକୁ ବୁଝି ପାରିଲି ନାହିଁ । ମୋତେ କେମିତି ବଡ଼ ଅଡୁଆ ଲାଗୁଛି । ଓଃ କି ଦୁର୍ଭାଗ୍ୟର ଦିନଟି ଆଜି ।

ଯଥାସମ୍ଭବ ସ୍ୱାଭାବିକ ସ୍ୱରରେ ପ୍ରଶାନ୍ତ କହିଲା, ସ୍ଥିର ହୁଅ । ନୀରବରେ ଆତ୍ମବିଶ୍ଳେଷଣ କର । ସବୁ ପ୍ରଶ୍ନର ସମସ୍ତ ଉତ୍ତର ସେଇଠି ଗଚ୍ଛିତ ଅଛି । ଓଁ ଶାନ୍ତି ଶାନ୍ତି ଶାନ୍ତି···

ସେ ପରିହାସ କଲା ।

— ଜଣେ ଅବିବାହିତା ଯୁବତୀ ପକ୍ଷେ ଏ ଉପହାସ···

— ଏ ? ଅବିବାହିତା ? ତା ହେଲେ···ତା ହେଲେ ତୁମେ ··

ପ୍ରଶାନ୍ତ ବ୍ରତୁଲତାର ଅଶ୍ରୁଳ ଆଖି ଯୋଡ଼ିକ ଆଡ଼କୁ ପରିହାସ ଭଙ୍ଗିରେ ଅଙ୍ଗୁଳି ନିର୍ଦ୍ଦେଶ କରି ବସି ରହିଲା ।

ବ୍ରତୁଲତା ତାର ଚିତଗ୍ରୀ ଭାବକୁ ଲୁଚେଇବାକୁ ଚେଷ୍ଟା କରୁ କରୁ କହିଲା, ତୁମେ ଜାଣନାହିଁ କଣ ? ପଚାରୁଛ କାହାକୁ ?

— ତା ହେଲେ ତୁମେ ବିବାହ କରିବା ପାଇଁ ମନ ବଳାଇଥିବା କଥା ସତ ?

— ସତ ।

— ଠିକ୍ ଅଛି । ତା ହେଲେ ମୁଁ ଯାହା କହୁଛି, ଏକଦମ୍ ଠିକ୍ କହୁଛି । ମୁଁ ଆହୁରି ବେଶି ଆନନ୍ଦିତ ।

—କିନ୍ତୁ କିଣ ସେଇଟା ଅଣାପ୍ରୁତ ବ୍ୟତିକ୍ରମ ? କି ପାପ କଲି ମୁଁ ?

— ଦିବ୍ୟ ମଣିଷ ଦେହ ଧାରଣ କରି ସତେଇଶି ବର୍ଷ ସାଧନା କରି ସାରିବା ପରେ ତମେ ଯେ ଆଜି ଏପରି ଏକ ମିଥ୍ୟା ସଂକଳ୍ପ ଗ୍ରହଣ କରିବାକୁ ଦ୍ୱିଧାବୋଧ କରିନା, ତାହାହିଁ ତୁମ ଜୀବନର ଏକ ଅଣାପ୍ରୁତ ବ୍ୟତିକ୍ରମ !

— କିପରି ? ଜଣେ ନାରୀ ଜଣେ ପୁରୁଷକୁ ପତିରୂପେ ବରଣ କରିବ, ଏହା କିଣ ତୁମ ଆଖିରେ ଏକ ଅଣାପ୍ରୁତ ବ୍ୟତିକ୍ରମ !

ପ୍ରଶାନ୍ତର ଉଲ୍ଲସିତ ମୁଖମଣ୍ଡଳକୁ ଅନେଇ ରହିଲା ଗୁରୁଲତା !

ଦୃଢ଼ ସ୍ୱରରେ କହିଲା ପ୍ରଶାନ୍ତ— ହଁ । ଆଜି ମଧ୍ୟ, ବହୁ ଯୁଗର ଅବାଞ୍ଛିତ ଅଭିଜ୍ଞତା ଲାଭ କରି ସାରିଲା ପରେ ମଧ୍ୟ ନାରୀ ଯନ୍ତ୍ର ବିଶ୍ୱର କରୁଥାଏ, ବିବାହ କରିବା, ଦେହବେଗ ଲାଳସାରେ ପ୍ରେମ କରିବାଟାକୁ ଏକ ପରମ କର୍ତ୍ତବ୍ୟ ମଣୁଥାଏ, ତା ହେଲେ ଏହା କେବଳ ଗୋଟାଏ ଉନ୍ନତ ନାରୀ ଚରିତ୍ରର ଅଣାପ୍ରୁତ ବ୍ୟତିକ୍ରମ ହିଁ ନୁହେଁ, ଏହା ନାରୀ ଜୀବନର ଏକ ଦୋଷାବହ ଆତ୍ମହତ୍ୟା ମଧ୍ୟ !

— ପ୍ରଶାନ୍ତ ବାବୁ !

— ହଁ, ଗୁରୁ ! ଅନ୍ତତଃ ତୁମ ଭଳି ପବିତ୍ର ପ୍ରାଣା ନାରୀ ଠାରୁ ମୁଁ ଏ ପ୍ରକାର ଦୁର୍ବଳତା ଆଶା କରି ନ ପାରେ !

— ଏଁ ?

ଉଭେଁ ଉଭିଙ୍କ ମୁହଁକୁ ଗୁହିଁ ରହିଲେ ।

କଟକରୁ ଭୁବନେଶ୍ୱର ଯିବାକୁ ବାହାରିଥିଲୁ ।

କଲେଜ ଛକ ପାଖ । ବନ୍ଧୁ ହୃଦାନନ୍ଦ ଗାଡ଼ି ଅଟକେଇ ସିଗାରେଟ କିଣିବାକୁ ପାଖ ଦୋକାନକୁ ଗଲେ । ସଡ଼କର ବାଁ କଡ଼କୁ ଗାଡ଼ି ଠିଆ ହୋଇ ରହିଲା । ଗାଡ଼ି ଭିତରେ ଡାହାଣ କଡ଼କୁ ଆଉଜି ଲୋଭମୁକ୍ତ ଆଖିରେ ମୁଁ ଅନେଇ ରହିଲି ବାଁ ପାଖକୁ । ସେଇଠି ଅଜସ୍ର ଲୋକ ସମାଗମ । ଦୋଷା, ପେଷରେଟୁ, ଇଡ଼ଲି, ଗୁରୁ, ଚହ୍ଲା ଓ ଚଟଣୀର ଆମ୍ବିଳିଆ ବାଗୁଆ ଆକର୍ଷଣ । ସାଉଥ୍ ଇଣ୍ଡିଏନ୍ ହୋଟେଲ ।

ଦଳ ଦଳ ହୋଇ ପିଲା, ବୁଢ଼ା, ଭେଣ୍ଡା—ମରଦ ମାଇକିନା, ପଶୁଛନ୍ତି, ଖସୁଛନ୍ତି । ଦେଖିଲ ପରି । ଉଦର ଜ୍ୱାଳାରେ ମଣିଷ କଣ ନ କରେ ? ଅଇଁଠା ବି ଖାଏ ତ !

ହଠାତ୍ ମୋ ସାମନା ଆଡ଼ୁ ଆସୁଥିବା ସାଇକେଲ ରିକ୍ସା ଡାହାଣ କଡ଼ରେ ଠିଆ ହେଲା । ଆରୋହୀ ଜଣେ ଦୋ ଦୋ ଚହ୍ଲା । ସୁନ୍ଦରୀ ତରୁଣୀ । ବେଶ ପୋଷାକରୁ ଆଭିଜାତ୍ୟ ଝରି ପଡ଼ୁଥିଲା ।

କେସ୍‌ ଭିତରୁ ମୋ ଆଡ଼କୁ ମୁହଁ ଲମ୍ବେଇ ଆଣି ହାତ ଯୋଡ଼ିଲି । କହିଲି, ପ୍ରଣାମ ଆଜ୍ଞା ! କେବେ ଆସିଛନ୍ତି ? କେଉଁଠି ରହିଛନ୍ତି ? ଆଉ କେତେ ଦିନ ରହିବେ କି ? ଘରଆଡ଼େ ଯିବେନି ?

ସତେ ଯେମିତି ତାର ଆଦୌ ସମୟ ନାହିଁ । ଗୁଞ୍ଜନ କଲାର ଧୁରନ୍ଧା ଧୁନୁଣୀଟିଏ କମ୍ପା ଅନେକ ଦିନର ଭୋକିଲା ଭିକାରୁଣୀଟି ସାମ୍ନାରେ କଂସାଏ ପଖାଳ ପାଇ ଚଟପଟ ଗୁଣ୍ଡା ଗୁଣ୍ଡା କରି ଗିଳି ଯାଉଛି ।

ଚିହ୍ନିବା ପାଇଁ ବହୁତ ଯତ୍ନ କଲି । ବାଁ ହାତ ପାଖର ବଡ଼ ଜାଇମଦାଟି ଅଧିକ ଚିହ୍ନା ଚିହ୍ନା ଲାଗିଲା । କିନ୍ତୁ ମନେ ପଡ଼ିଲା ନାହିଁ ।

ଦୁଇ ହାତ ଯୋଡ଼ିଲି । ବଲ ବଲ କରି ଅନେଇ ରହିଲି ତାର ମେକ୍‌ଅପ ଲାଇଟ୍ ପରି ତେଜ ଛଳ ଛଳ ମୁହଁକୁ । କିଏ ଇଏ ? ବୟସ ତ ବାଇଶି ତେଇଶିରୁ ବେଶି ହେବ ନାହିଁ । ପାତଳ ଦେହ । ଜହ୍ନ ଆଲୁଅ ପରି ଜ୍ୟୋତି ଝଟକୁଛି । ବେଶ ପୋଷାକ ତ ଅତି ଲୋଭନୀୟ । ଦେଖିଲି, ଶୀଘ୍ର ପଳେଇବା ପାଇଁ ସେ ଉଦ୍‌ବିଗ୍ନ ହେଉଛି । ଆଉ ବିଳମ୍ବ ନ କରି କହି ପକାଇଲି, କାଲି ଆସିଛି । ରହିବି ଆଉ ସପ୍ତାହେ ଖଣ୍ଡେ । ତାଙ୍କ ବଙ୍ଗଳାରେ ରହୁଛି ।

ଆହୁରି କେତେ କଥା କହିଥାନ୍ତି । କେତେ କଥା ପଚାରିଥାନ୍ତି । ଦରକାର ହେଲେ ଗାଡ଼ିରେ ବସେଇ ଘୁଞ୍ଚିଦେଇ ଆସିଥାନ୍ତି । କିନ୍ତୁ ସେ ଆଉ ତିଳେ ମାତ୍ର ଅପେକ୍ଷା କଲା ନାହିଁ । ଠଣ୍ ଠଣ୍ ଘଣ୍ଟି ବାଡ଼େଇ ରିକ୍‌ସାଟି ଗ୍ଳଲିଗଲା ।

ବନ୍ଧୁ ଆସିଲେ । ଆମର ଗାଡ଼ିଟି ଛୁଟି ଚାଲିଲା ଆଗକୁ । ମଧ୍ୟାହ୍ନ ଖାଇବା ପାଖ ହେଲା ବେଳକୁ ସେ ପଚାରିଲେ, କାହା ସାଙ୍ଗରେ ଗପ ଜମେଇ ଥିଲ କି ?

ଯଥାସମ୍ଭବ ଉଦାସୀନତା ଦେଖାଇ କହିଲି, ଏକ ଏକ ରାଇଜର ରାଜକୁମାରୀ ଅପରୂପା ରୂପସୀ, ତନ୍ୱୀ ତରୁଣୀ ।

—ଆଜ୍ଞା କୁମାରୀ! ରାଜାମାନଙ୍କର ଶେଷ ଚିହ୍ନ ଟିକକ ବି ତ ଏମାନେ ବୃଟି ଗୋଷ୍ଟୁ ଖାଇଲେଣି । ଆଉ ରଜା ନା ଫଜା ?

ବନ୍ଧୁ ପରିହାସ ହାଣିଲେ। ତାଙ୍କ କଥାର ଗୋଟିଏ ଅକ୍ଷର ବି ମୋ ମନକୁ ସ୍ପର୍ଶ କଲା ନାହିଁ। ମନଟା ଖାଲି ଉକୁରୁ ବୁକୁରୁ ହେଲା । ସେ କିଏ କି ?

ଏମିତି କେତେ କଅଁା ନମସ୍କାର ଝଡି ନଡି ତ ଭୁକ୍ତାକୁ ଯାଏ; ଏବ ଯାଇଥାନ୍ତା । କିନ୍ତୁ ପରିଚୟଟା ସପନର ସାତ ସମୁଦ୍ର ତେର ନଈ ସେ ପାଖ ପଦ୍ମ ପୋଖରୀ ମଝି ସୁନା ପଦ୍ମର ସୁବାସିତ କେଶର ଭିତରେ ଗୋପନ ରହିଗଲା ପରି ଲାଗୁଚି ଯେ! ତେଣୁ ମନ ମାଡ଼ ଖାଇଲା । ଛଟପଟ ଲାଗିଲା ।

ଗାଡ଼ି ତ ଚାଲିଛି । ହୃଦାନନ୍ଦ ବାବୁ ଆଉ ମୁହଁ ଖୋଲୁ ନାହାନ୍ତି । ତୁନି ରହି ବସି ବସି ଯିବାକୁ କଣ ପଇସା ପଡୁଛି କି ? ମନ ଭିତରେ ଜାଲ ବୁଣିଲା ଭାବନା, ବୁଢ଼ୀଆଣି ପରି ।

ଡାକ୍ତର ଉର୍ମିଳା ମହାପାତ୍ର କି ? କିନ୍ତୁ ସେ ତ ବାହା ହେବାକି ଗଲା ପରି କେବେ ଏତେ ସଜେଇ ହୁଏ ନାହିଁ । ଅନ୍ଧାର ହୋଇ ଆସିଲା ବେଳକୁ, କମ୍ପା ସିନେମା ଦେଖିବାକୁ ସିନା ଅନ୍ୟ କାହାର କାରରେ ବାହାରେ । ଏମିତି ଦିନ ଦିପହରରେ ଖୋଲା ଟେକ୍ସାଟାରେ ଧାଇଁବ କାହିଁକି ?

ନା, ସେ ନୁହେଁ । ଆଜି କିଏ ? ମିସ୍ ମେଖଳା କି ? କଷି ମାଷ୍ଟ୍ରାଣୀଟା । କିନ୍ତୁ ସ୍କୁଲ ତ ଛୁଟି ହେଇନ । କାମ ବେଳଟାରେ ଏମିତି ସଜେଇ ହୋଇ ସେ ବା କାହିଁକି ଦାଣ୍ଡକୁ ଆସିବ ? ସେମିତି

ସଲସଲ ଝିଅଟି ଅବଶ୍ୟ, କିନ୍ତୁ ଗୃହକର୍ତ୍ତ୍ରୀ ପ୍ରତି ତାର ଯୁ ଭୟ—ନାଟ୍ୟପୂର୍ଣ୍ଣ, ନାଟ୍ୟପୂର୍ଣ୍ଣ । କଦାପି ସେ ହୋଇ ନ ପାରେ ।

ଅଚ୍ଛା, ସେ ଜାଇମନ୍ଦାଠା କାର କି ? ସେଇ ଚିହ୍ନାଟାତ ବେଶି ପରିଚିତ ପରିଚିତ ଲାଗୁଛି । ପିଲାବେଳେ କିଏ ସେଠି ସାଙ୍ଗ ଥିଲା ? ଯିଏ ବା ଥିଲେ, ସେମାନଙ୍କର ଘର ତ ଜୟପୁରରେ, କୋରାପୁଟରେ, ନବରଙ୍ଗପୁରରେ କି କୋଟପାଡ଼ରେ । କଟକକୁ ଆସିବେ କାହିଁକି ? ବାହା ହୋଇ କିଏ ଚାଲି ଆସିଛି କି ?

ତେବେ ସେ କିଏ ହୋଇପାରେ ? ଓକିଲ ଗୋବିନ୍ଦଙ୍କ ଝିଅ ? ହେଲେ ମୋତେ ଏତେ ସକାଳରେ ସେ ବା ନମସ୍କାର ହୁଅନ୍ତା କାହିଁକି ? ମୁହଁ ଆଡ଼େଇ ଚାଲି ଯାଆନ୍ତା ସିନା । ମୁଁ କଣ କେଉଁ ସିନେମା କମ୍ପାନୀର ମାଲିକ ନା ଶିକ୍ଷା ବିଭାଗର ମନ୍ତ୍ରୀ ? ମୋତେ କାହିଁକି ଖୋସାମତ କରନ୍ତା ?

ହଁ ।···ହୋଇଥିବ କୌଣସି ଲେଖିକା କିମ୍ବା ଲେଖକ ବନ୍ଧୁଙ୍କ ଝିଅ କି ଭଉଣୀ । ପି. ଇ. ଏନ୍. ଅଧିବେଶନ ବେଳେ ଏକା ବସାରେ ରହିଥିବୁ । ହେଲେ ବି ଏ ଯେମିତି ଧରଣର ଲେଖିକା ହୋଇଥିବ ନା, ତାର ବହି କେହି ଛପାଉ ନ ଥିବେ । ତେଣୁ—

ଯଦି ଲେଖିକା ନ ହୋଇ ଲେଖକଙ୍କ ଝିଅ କି ଭଉଣୀ ହୋଇଥିବ, ତେବେ ବି ଭୟ । ଯାଉ ପଳେଇଗଲା, ଭଲ ହେଲା ।

କିନ୍ତୁ ସେମିତି କେହି ଦୂର ସମ୍ପର୍କୀୟା ତ ନୁହେଁ । ଜାଇମନ୍ଦାଠା ଯେ ଅତି ପରିଚିତ । ଅତି ଆପଣାର କେହି ଭଳି ଲାଗୁଛି ।

ମୁଣ୍ଡ ଟଣକେଇ ଚିନ୍ତା କଲି । ଯା—କିଛି ମନେ ପଡୁନାହିଁ । ହୃଦାନନ୍ଦ ବାବୁଙ୍କୁ ସିଗାରେଟ୍ ଖଣ୍ଡେ ମାଗି ନିଆଁ ଧରେଇଲି ।

ନା, ଯାଃ --ବେଣି ଚହ୍ଲା ଥିଲ ମୁହଁ ପରି ଲାଗୁଛି । ସେପରି ଥରେ ଅଧେ ଦେଖା ଗୃହଁ।ର ମୁହଁ ସେ ନୁହେଁ ।

ହଁ…ହଁ…ହଁ,…ତା ନା ହି କଣ କି? ହୋଇଥିବ, ହୋଇଥିବ—ଆଗାମୀ ନିର୍ବାଚନରେ ସିଏ ଆମ ନିର୍ବାଚନ ମଣ୍ଡଳୀରୁ ପାର୍ଲାମେଣ୍ଟକୁ ପ୍ରାର୍ଥୀ ହୋଇ ଠିଆହେବ ବୋଲି କଥା ଉଠୁଛି । ହୋଇଥିବ, ଆଜଠୁଁ ଖୋସାମଦ ଆରମ୍ଭ କରିଦେଇ ଥିବ । ଧେତ୍… ଏଇଟା କଣ ଖଦଡ଼ ପିନ୍ଧିଛି କି? ଖାଣ୍ଟି ବନାରସୀ ସିଲ୍କ ପିନ୍ଧିଛି ନା କଣ । ଛୁଃ !

ଯା, ଆଉ ହେଲା ନାହିଁ ।

\+ \+ \+

ତହିଁ ଆରଦିନ ମୁହଁ ସଞ୍ଜବେଳେ ଡାକ ବଙ୍ଗଳାର ନିର୍ଜନ ଅଣଓଡ଼ିଆ ପିଣ୍ଡା ଉପରେ ବସି ଗୋପୀ ବାବୁଙ୍କର 'ଲପୁ ଖଲପୁ' ପଢ଼ୁଛି । ଭିକାରୁଣୀଟିଏ ଆସି ବିରକ୍ତ କଲା ।

ଗଳା ଥରି ଥରି କରି କହିଲା, ବାବୁ ତୁମ କଲମକାଠି ବଜର ହେଉ । ଜଗନ୍ନାଥେ ଭଲ କରନ୍ତୁ । ଲକ୍ଷ୍ମୀ ସାହା ହୁଅନ୍ତୁ । ଅଣାଏ ପଇସା ଦିଅ ବାବୁ ।

ଆଉ ଥରେ, ଆଉ ଥରେ । ଖାଲି ଗୀତ ଗାଇଲା ପରି କହି ଯାଉଛି । ବିରକ୍ତ ଲାଗିଲା । ଭଲ କରି ଅନେଇଲି । ମୁହଁରେ ବାର୍ଦ୍ଧକ୍ୟର ଗଭୀର ଛାପ ପଡ଼ିଛି । ତା ଛଡ଼ା କେମିତି କେମିତି ଦେଖାସିଆ ଦେଖାସିଆ ଫୁଲିଲା ଫୁଲିଲା ପରି ଦିଶୁଛି । ଯାହା କହୁଛି, ଅନ୍ତରର କଥା ନୁହେଁ । କେବଳ ପାଟି ପାକୁ ପାକୁ କରୁଛି । ବୋଧୁଡ଼ିକ ମନକୁ ମନ ଜିଭ ତଳୁ ତିଆରି ହୋଇ ବାହାରି ଆସୁଛି ।

ସତେ ଯେମିତି ଗୋଲ ଗୋଲ ପିଚେର୍‌ମେଣ୍ଟଗୁଡ଼ିକ କଳରୁ ଖସି ପଡ଼ୁଛି । ମୋତେ ସେ କଥା କହୁଥିଲା ସିନା ତାର ଦୁଲଟାପାକ ଆଖି ପାଖ ସଜନା ଗଛ ଛୁଇଁ ଓ କଅଁଳ ପତର ଉପରେ ଚର ବୁଲୁଥିଲା ।

କହିଲି, ବେଶି ବକ୍ ବକ୍ କର ନାହିଁ । ପଇସା ଦେଇ କେବେ ସୌଭାଗ୍ୟ କଣାଯାଇ ପାରେ ନାହିଁ । ମୋର କିଛି ଲୋଡ଼ା ନାହିଁ କ ମୋଠି କେଜା କିଛି ନାହିଁ । ଯା…ଯା…ପଳା—

ବୁଢ଼ୀ ଗାଠିଲି କ ନାହିଁ କେଜାଣି । ଗର ଗର ହୋଇ କହିଲା, ବାବୁ ତୁମେ ଆପଣେ ବଡ଼ ଲୋକ । ମଣିଷକୁ ଘୃଣା କରୁଛ ?

ବକ୍ରତ କଣ୍ଠର ଶେଷର ପ୍ରଶ୍ନବାଚକ ? ଏ ଭାଷା ! ବିସ୍ମିତ ହେଲି ।

କହିଲି, ଶୁଣ । ତୁ ଭିକ୍ଷା କରୁଛୁ କାହିଁକି ? ମୁଁ ଭିକ୍ଷା ବୃତ୍ତିର ଘୋର ବିରୋଧୀ । ତୁ ତ ବେଶ୍ ଦୁ ପଇସା କମେଇ ପାରିବୁ, ଦେଖୁଛି । କାମ ଧାମ କାହିଁକି କରୁନୁ । ତୋର କଣ ଆଉ କିଏ ନାହିଁ ?

କାନ୍ଦିଲା । କହିଲା, ବଞ୍ଚି ରହିବା ବାବୁ, ଏହାହିଁ ବଡ଼ କଥା । ଏଥର ସେ ମୁନଗା ଗଛ ଉପରୁ ଦୃଷ୍ଟି ଗୋଟାଇ ଆଣି ମୋ ମୁହଁ ଉପରକୁ ଫିଙ୍ଗି ଦେଲା ।

ସତେ ଯେମିତି ମୁଣ୍ଡରେ ଡାର ବଜ୍ର ପଡ଼ିଲା । କଗୁଡ଼ ହେଲି ପରି ମୋର ଗୋଡ଼ତଳେ ପଡ଼ିଗଲା । ଅଭୁତ ! ଆଶ୍ଚର୍ଯ୍ୟ ବିସ୍ମୟରେ ମୁଁ ଠିଆ ହୋଇ ପଡ଼ିଲି ।

ଗଦ୍‌ଗଦ୍ ହୋଇ କହିଲା, ବାବୁ ତମେ ? ତୁମେ ମୋତେ ପଠେଇଥିଲ କଟକ ସହରକୁ; ଝିଅକୁ ମାନବୀର କରେଇବୁ, ବଡ଼ କରେଇବୁ, ଶିକ୍ଷିତା କରେଇବୁ, ସ୍ୱର୍ଗ ସୁଖ ଭୋଗ କରିବୁ ବୋଲି କହୁଥିଲ ? କହ ବାବୁ, କାହିଁ ମୁଁ, କାହିଁ ସେ ବଡ଼ଲୋକ ?

ଆବା କାବା ହେଲି !

ପୁଣି ଡର ଡର ହୋଇ କହିଲା, ମୋତେ ଚହ୍ନି ପାରିଲ ନାହିଁ ବାବୁ ? ନନ୍ଦାଶ୍ରିକାର ମାଁ ମୁଁ । ତମର ଦେଉଣା ।

କହିଁ କହିଁ ହୋଇ ସେ କାନ୍ଦିଲା । ମୁଣ୍ଡ ଭିତରଟା ମୋର ଚକ୍କର ମାରିଗଲା । ଘର ଭିତରକୁ ପଶିଯାଇ ଖଟ ଉପରେ ଲମ୍ବ ହୋଇ ପଡ଼ିଗଲି ।

ସବୁ କଥା ଗୋଟି ଗୋଟି ହୋଇ ମନେ ପଡ଼ିଲେ ।

କିସ ପୁଣି ଦେଖା ନ ଯାଏ ବଞ୍ଚିଥିଲେ ଜୀବନେ ?

ଭଗବାନ ! କଣ ହେଉଛି ଏ ସବୁ ? ନନ୍ଦାଶ୍ରିକାର ମାଁ ଆଜି କଟକ ରାସ୍ତାରେ ଭିକ ମାଗୁଛି ?

ଡାକ ବଙ୍ଗଳାର ଚୌକିଦାର ଘର ଭିତରକୁ ଆସି କହିଲା, ବାବୁ, ଆପଣ ଆଜି ବୁଲି ଯାଇଥିଲାବେଳେ ଜଣେ କିଏ ଝିଅ ଆସିଥିଲେ । ଘଣ୍ଟାଏ ଜଗିଲେ । ଦେଖା ନ ପାଇ ଏ ଚିଠି ଖଣ୍ଡିକ ଆପଣଙ୍କୁ ଦେବାକୁ କହି ବୁଲିଗଲେ ।

ଲଫାଫା ଖୋଲିବାକୁ ହାତରେ ବଳ ନ ଥିଲା । ଦାନ୍ତରେ ଚିରିଲି ।

ଲେଖାଥିଲା—

ପୂଜ୍ୟ ବାବୁ,

ପ୍ରଣାମ ନେବେ । କାଲି ଅପ୍ରତ୍ୟାଶିତ ଭାବେ ରାସ୍ତାରେ ଦେଖା ହେବାଟାକୁ ପରମ ସୌଭାଗ୍ୟ ମଣିଲି । କିନ୍ତୁ ବେଳ ନ ଥିଲା ସବୁ କଥା ଖୋଲି କହିବାକୁ । ରେଡ଼ିଓରେ ଗୋଟାଏ ପ୍ରୋଗ୍ରାମ ଆଟେଣ୍ଡ କରିବାର ଥିଲା । ତରତରରେ ବୁଲିଗଲି । କ୍ଷମା କରିବେ ।

ଆପଣଙ୍କର ସାହାଯ୍ୟ, ସହାନୁଭୂତି ଜୀବନରେ ଭୁଲିବାର ନୁହେଁ । ଆପଣଙ୍କ ଅନୁରୋଧ ରକ୍ଷାକରି ପ୍ରମୋଦ ବାବୁ ମୋର ଉଚ୍ଚ ଶିକ୍ଷା ପାଇବାର ସକଳ ସୁବ୍ୟବସ୍ଥା କରି ଦେଇଛନ୍ତି । ଜୀବନର ପାରିପାର୍ଶ୍ୱିକ ଅବସ୍ଥିତି ବି ମଙ୍ଗଳ ଜଣାଉଛି । ସବୁ ଠିକ୍ ଅଛି । କିନ୍ତୁ ଅନେକ ଦିନ ହେଲା ପ୍ରମୋଦ ବାବୁଙ୍କ ଆଚରଣ ଆଦୌ ସହି ହେଉନାହିଁ । ଆପଣଙ୍କ ନିକଟକୁ ଚିଠି ଲେଖିବା ପାଇଁ ମଧ୍ୟ ସେ ମନା କରି ଦେଇଛନ୍ତି ।

ଆପଣଙ୍କର ଇଚ୍ଛା ଏବଂ ତାଙ୍କର ନିର୍ଦ୍ଦେଶ ଅନୁସାରେ ମୁଁ କେବେ ଆପଣଙ୍କୁ ଚିଠି ଦେଇନାହିଁ । ଦେବାର ବାସନା ବି ନଥିଲା । କାରଣ କୌଣସି ଘଟଣାରେ ଅପରାଧିନୀ ହେବାର ଇଚ୍ଛା ମୋର ନାହିଁ ଏବଂ ଏ ଶିକ୍ଷା ଆପଣ ହିଁ ଦେଇଛନ୍ତି । କିନ୍ତୁ କାଲି ଆପଣଙ୍କୁ ଦେଖିବା ପରେ ମୋର ରୁଦ୍ଧ ମନର ସକଳ ବେଦନା ମହାନଦୀର ବନ୍ୟା ପରି ଅଥଳ ମଥଳ ହୋଇ ଉଠୁଛି ।

ମୋର ମାଁ କାହିଁ ?

ପ୍ରମୋଦ ବାବୁ ସଇତାନ ନା ମଣିଷ? କେହି ସତ କହୁନାହାନ୍ତି । ମୁଁ କିଛି ଜାଣିପାରୁ ନାହିଁ । ମୁଁ ଜାଣେ, ଆପଣ ନିରାଶ ନ କରି ଠିକଣା ଉତ୍ତର ଦେବେ ।

ସ୍ନେହ-ସୌଜନ୍ୟ-ମୁଗ୍ଧା
ନିହାରିକା

ହାୟ ଭଗବାନ !

ଏକା ନିଶ୍ୱାସରେ ଚିଠିଟି ପଢ଼ିସାରି ଖଟରୁ ଉଠି ପଡ଼ିଲି । ଧାଇଁ ଗଲି ଭିକାରୁଣୀ ପାଖକୁ । ସେ ଲୁହ ପୋଛୁ ପୋଛୁ ଚାଲି ଯାଉଥିଲା । ବାଟ ଓଗାଳି ଠିଆ ହେଲି ।

ପାଟିରୁ ମୋର ବାହାରି ପଡ଼ିଲା, ପିଶାଚୁଣୀ ! ଝିଅକୁ ପରିତ୍ୟାଗ କରି—

ମୁଁ ରାଗ ଓ ଘୃଣାରେ ଧୈଁ ସେଁ ହୋଇ ଯାଉଥିଲି ।

ତା ମୁହଁରୁ ମଧ୍ୟ କଥା ଫୁଟିଲା ନାହିଁ । ଅଶ୍ରୁଳ ମୁଖରେ କେବଳ ହାତ ଦୁଇଟିକୁ ଦେଖାଇ ଦେଲା । ଲୁଗା ଠେକ ଗୋଡ଼ ଦୁଇଟି ପ୍ରତି ଦୃଷ୍ଟି ଆକର୍ଷଣ କଲା ।

ଇସ୍ ! କୁଷ୍ଠ !! ଇଃ କି ଭୟଙ୍କର ଗଳିତ କୁଷ୍ଠ ! ଭଣ ଭଣ ମାଛି ।

ବହୁ କଷ୍ଟରେ ସେ କହିଲା, କେଉଁ ମୁହଁରେ ରହିଥାନ୍ତି ବାବୁ ସେଇଠି ? ମୋର ପରା ଲୋଡ଼ା ଝିଅର ସୁଖ ? ତମେ କହୁଥିଲ ବାବୁ ! କେମିତି ରହନ୍ତି ସେଠି ?

ହେ ଭଗବାନ !

ମୁଣ୍ଡରେ ହାତଦେଇ ସେଇଠି ବସି ପଡ଼ିଲି, ସେଇ ଓଦା ମାଟିରେ ।

ନ ବର୍ଷ ତଳେ ଏଇ ଭିକାରୁଣୀ ଥିଲା, କୋରାପୁଟ ଜିଲ୍ଲାର ଜଣେ ବିଖ୍ୟାତ ସମାଜସେବୀଙ୍କ ପତ୍ନୀ ! ଯାର ନା ଶୁଣିଲେ ଲୋକ କାଠ ଗୁଣ୍ଡ ଦେଉଥିଲେ, ସିଏ ଆଜ ଏକମାତ୍ର ଝିଅକୁ ମଣିଷ କରିବ ବୋଲି ଗାଁ ଛାଡ଼ି, ଆର ଗାଁ ହାଣ୍ଡିରେ କୁଷ୍ଠରୋଗିଣୀ ! ଭିକ୍ଷାପାତ୍ର ଧରି ଘର ଘର ବୁଲୁଛି । ଝିଅ ହୋଇଛି, ପ୍ରଭାବଶାଳୀ ସହରେ ତରୁଣ ମନର ଶୀକାର ।

ଜୟପୁର ବସ୍ ଷ୍ଟାଣ୍ଡର ସକାଳୁଆ ଜନ ଗହଳି। ତା ଭିତରେ ହାତ ଛନ୍ଦାଛନ୍ଦି ହୋଇ ବୁଲୁ ଥିଲେ ଦୁଇ ବନ୍ଧୁ—ପ୍ରଫୁଲ୍ଲ ଆଉ ପ୍ରସନ୍ନ। ଯୁବକ। ପ୍ରଫୁଲ୍ଲ ଓକିଲ ଶରତ୍ ବାବୁଙ୍କ ପୁଅ। ଶରତ୍ ବାବୁଙ୍କ ବନ୍ଧୁ ଜଜ୍ ସାହେବ ନଶିଥ ବାବୁଙ୍କ ପୁଅ ପ୍ରସନ୍ନ। ପୁରୀରେ ପିଲାବେଳୁ ଏକାଠି ପଢା ଶୁଣା କରୁଥିଲେ। ଗୋଟିଏ ପରିବାର ଭଳି ଚଳୁଥିଲେ। ଅନେକ ଦିନ ହେଲା ଓକିଲ ଓ ଜଜ୍ ସାହେବ ମଲେଣି। ତଥାପି ତାଙ୍କ ପରିବାରର ପୂର୍ବ ସମ୍ପର୍କ ଅଛିନ୍ନ ରହିଛି।

ଏମ୍. ଏ., ବି. ଏଲ୍. ପାସ୍ କଲା ପରେ—ଦରିଦ୍ର କୋରାପୁଟ ଆଡ଼େ ଓକିଲ ପ୍ରଫୁଲ୍ଲର ଦୃଷ୍ଟି ପଡ଼ିଛି। ଆଜି ସେ ଜୟପୁରର ଜଣେ ଅପ୍ରତିଦ୍ୱନ୍ଦୀ ଯୁବକ ଆଡ଼ଭୋକେଟ। ସେ ନବ-ପରିଣିତା ପତ୍ନୀ ଜ୍ୟୋତିକୁ ନେଇଁ ଏଠି ମଉଜିଆ ଓ ହାଲୁକା ଘର ସଂସାରଟିଏ ଜମେଇ ରହିଛି।

ପ୍ରଫୁଲ୍ଲ ପ୍ରସନ୍ନର ହାତଟାକୁ ଘୁଡ଼ ଦେଇ ଦେଇ କହିଲା— ଭାଇରେ, ତୁ ଏତେ ଚଞ୍ଚଳ ବିଲାତରୁ ଫେରିବୁ ବୋଲି ଅନ୍ତତଃ ମୁଁ ଆଶା କରି ନଥିଲି।

'କିନ୍ତୁ କଣ କରିବ ଭାଇ, ଅର୍ଥଂ ବଳଂ ତ କେବଳଂ । ଯାହାହେଉ ବିନା ବାଧାରେ ଯେ ବୁଲିଟାଏ ହୋଇଯାଇଛି ସେତିକି ଯଥେଷ୍ଟ ।'

'ଆରେ, ମୁଁ ତ ବିଲ୍‌କୁଲ ଭୁଲି ଯାଇଛି, ତୁ ଏଠିକୁ ଆସିବା କାରଣ ?'

'ଆରେ ପାଗଳ, ଏ ଯାଏ କହିନି ? ତମ କଲେଜର ପ୍ରିନ୍‌ସିପାଲ ପରା !

ହା ହା ହୋଇ ପ୍ରଫୁଲ୍ଲ ହସି ଉଠିଲା । 'ଆରେ ଖବର କାଗଜରେ ଯେଉଁ ପ୍ରସନ୍ନର ନାଁ ବାହାରି ଥିଲା, ସିଏ ତୁ ? ପ୍ରଫେସରରୁ ପ୍ରିନ୍‌ସିପାଲ !'

ଦିହେଁ ହସି ଉଠିଲେ ।

ଏତିକି ବେଳେ ପ୍ରଫୁଲ୍ଲର ଜୋତା ଗୋଡ଼ପାରେ ବୁଲା କୁକୁରଟାଏ କେଇଁ କରି ଉଠିଲା । ସେଥିରେ ଟିକିଏ ପ୍ରକୃତିସ୍ଥ ହେଲାଭଳି ପ୍ରଫୁଲ୍ଲ କହିଲା, ଆଚ୍ଛା ତୋ ସାଙ୍ଗରେ ଆଉ କିଏ ?

ଆଉ କିଏ କି ଭାଇ ? ଏକମାତ୍ର ବେଡ଼ିଂ, ଗୋଟାଏ ଟ୍ରଙ୍କ ଛଡ଼ା ବର୍ତ୍ତମାନ କିଛି ଆଣିପାରି ନାହିଁ ।

'ଆଚ୍ଛା, ଚାଲ । କଲେଜ ପର୍ଯ୍ୟନ୍ତ ତୋତେ ଛାଡ଼ି ଦେଇ ଆସେ ।'

'ତୋ ଘର କେଉଁଠି ପ୍ରଫୁଲ୍ଲ ?'

'ଠିକ୍ ତୋ କଲେଜ ପାଖରେ । ପ୍ରାୟ ସାମନା ସାମନି ଗଳି ଭିତରେ ।'

'ଆନନ୍ଦର କଥା ।'

+ + +

ଏ ଦେଶର ଉପାର୍ଜନକ୍ଷମ ଯୁବକ ପ୍ରଫୁଲ୍ଲ । ଚେହେରା ଓ ଅଙ୍ଗସଜ୍ଜା ଅତି ମନୋହର ।

ବର୍ଷା ଦିନ । ନରମ ଦେହରେ ଗରମ ପୋଷାକର ସୁରମ୍ୟ ପରିପାଟୀ । ଆଜି ଓକିଲାତିରୁ ପାଇଥିବା ନୋଟଗୁଡ଼ାକୁ ସଜେଇ ରଖୁ ରଖୁ ଜ୍ୟୋତି କହିଲା, 'ଶୁଭୁନାହିଁ । ଗୋଟାକ ବେଳେ ପ୍ରସନ୍ନ ବାବୁ ଡାକି ଡାକି ଗଲେ । ଚାକରକୁ କହିଛନ୍ତି, ସଞ୍ଜବେଳେ ଆସିବେ ।'

'ଆରେ ରେ, ଖାଲି ଡାକି ଡାକି ସେ ଚାଲିଗଲା । ଚା ଟିକିଏ କି ପାନଟିଏ ଦେଇ ସାନ ଅଭ୍ୟର୍ଥନାଟିଏ ବି କରି ପାରିଲ ନାହିଁ ? ମୁହଁ ପୋଡ଼ୁ ତମ ଓଡ଼ିଆଣୀଙ୍କର ।'

'ହଁ ମୋର ଲେଡ଼ା ପଡ଼ିଚି । କିଏ ଗୋ ସେ ? ସେମିତି ବାରଣ୍ଡା ତଳେ ଠିଆ ହୋଇ ହୋଇ ଫେରିଲା ତ ଆଗୁ ହେଲା । ଭୋଜି ଖୁଆଇ ତମେ ଅଭ୍ୟର୍ଥନା କରୁନା ?'

'ଆଗୁ ହଉ । ସଞ୍ଜବେଳେ ମୁଁ ତାକୁ ନିମନ୍ତ୍ରଣ କରୁଛି । ଭୋଜି ଭାତର ଆୟୋଜନ ତମେ କର ।'

ହଉ କହି ଜ୍ୟୋତି ଘର ଭିତରକୁ ଚାଲି ଯାଉଥିଲା । ପ୍ରଫୁଲ୍ଲ ଡାକିଲା, ଶୁଣିଲ ଜ୍ୟୋତି । ପ୍ରସନ୍ନକୁ ତମେ ସାଧାରଣ ଆଖିରେ ଦେଖିବ ନାହିଁ । ମନେକର ଯେମିତି, ତମ ନଣନ୍ଦ ମାଧବୀର ହବୀ ପତି ସେ ।

'ଓଃ ହଃ । ଜାଣି ନଥିଲି । ଭିତରେ ଭିତରେ ଗୋଟାଏ ଷଡ଼ଯନ୍ତ୍ର ଚାଲିଚି ନା ? ମନ୍ଦ ନୁହେଁ । ପ୍ରସନ୍ନକୁ ଆଗ ଡାକ, ପେଟେ ଖୁଆଇ ତାକୁ ସାବାଡ଼ କରୁଚି ମୁଁ ।'

+ + +

ପ୍ରସନ୍ନ ଭାବୁଥିଲା, ଆଜିର ରବିବାରଟିକୁ ଆଉ ଟିକେ ଉପଭୋଗ୍ୟ କରିବ । ତେଣୁ ସେ ଯାଇଥିଲା ପ୍ରଫୁଲ୍ଲ ଘର ଆଡ଼େ । ପ୍ରଫୁଲ୍ଲ ତ ନଥିଲା । କବାଟ ଫାଙ୍କରୁ ଜ୍ୟୋତିର 'ନାହାନ୍ତି' ଅଭ୍ୟର୍ଥନା ଯେମିତି ଭାଲି ଆସିଲା ମନ ଭିତରକୁ । କିନ୍ତୁ ସେତେବେଳକୁ ତା ମନରେ ଗୋଟାଏ ଭାବନା ପଶି ଯାଇଚି — ଜ୍ୟୋତି ପରି ସୁନ୍ଦରୀ ପତ୍ନୀକୁ ନେଇ ପ୍ରଫୁଲ୍ଲ ପ୍ରକୃତରେ କେଡ଼େ ସୁଖୀ ହୋଇ ନଥିବ ? କିନ୍ତୁ ସେ ? ଗଦା ଗଦା ପାଠ ପଢ଼ି ଶହ ଶହ ଟଙ୍କା କମେଇଚି — ବିବାହ ହେବନାହିଁ ବୋଲି ଥରେ ପ୍ରତିଜ୍ଞା କରିଥିଲା ବୋଲି ବତିଶି ବର୍ଷ ହେଲା ସେମିତି ରହିଚି । ଧନ ସାରା ଏଣେ ତେଣେ ହୋଇ ଘରଗୁଡ଼ାକ ଖାଲି ଆଁ ହୋଇ କଟି ଯାଉଚି । କି ଦୁଃଖର କଥା !

ଭାବି ଭାବି କାଲି ଡାକରେ ଆସିଥିବା ଚିଠିଗୁଡ଼ିକୁ ଘାଣ୍ଟିଚି । ଏଇ କେତେ ବର୍ଷ ହେଲା କ୍ରମାଗତ ତା ପାଖକୁ ଯେ ପ୍ରସ୍ତାବ ପରେ ପ୍ରସ୍ତାବ ଆସୁଚି, ତାହା ନେଇଁ ଟିକିଏ ଚିନ୍ତା ବି କରୁଚି । ଏଇଥିରୁ ଜଣେ କାହାକୁ ବାଛି କରିଦେଲେ ବି ଚଳନ୍ତା ତ ?

କିନ୍ତୁ ତଳ ଦିନର ପ୍ରତିଜ୍ଞା ତାର ଏ ଚିନ୍ତାକୁ ପରାସ୍ତ କରି ଦେଉଚି । ତଥାପି ଜ୍ୟୋତି ପରି ପତ୍ନୀଟିଏ ......

ତାର ଯୌବନ-ପାଟିରୁ ଲାଳ ବହି ଯାଉଚି ।

\+ + +

ସେ ଆଡ଼ରୁ ଜୋତା ଖଡ଼ର ଖଡ଼ର୍ କରି ପ୍ରଫୁଲ୍ଲ ପହଞ୍ଚିଲା ।

'କିରେ ପ୍ରସନ୍ନ । ବେଶ୍ ବିରହୀ ପରି ବିରସ ଦିଶି ପାରୁଚୁ ତ ?'

'ଆ ଭାଇ ଆ । ଟିକିଏ ଚିନ୍ତା କରୁଥିଲି । ତମ ଘରଆଡ଼େ ଯାଇଥିଲିରେ, ତୁ ନଥିଲୁ ।'

'ଶୁଣିଲ । ଆସ୍ତୁ ଆ ଟିକଏ ବୁଲବୁଲ କରି ଆମ ଘରଆଡ଼େ ଯିବା ।'

'ଆସ୍ତୁ ହଉ ।'

ପ୍ରସନ୍ନ ଉଠିଲା । ଲୁଙ୍ଗିଟାକୁ ପାଲେଟି ପକାଇ ଟ୍ରଙ୍କରୁ ବାହାର କଲା ସାଗୁଆ ପୋଷାକ । ଗୋଲାପି ରଙ୍ଗର ଅଣ୍ଡର ଡ୍ରୟେରର ଉପରକୁ ଧଳା ମଲମଲ୍ ଲୁଧିଆନା ସିଲ୍କ ପାଇଜାମା । ତାକୁ ମାନିଲା ଭଳି ଦେହରେ ସୁନା ରଙ୍ଗର ପାତଳା ପଞ୍ଜାବୀ । ମୁଣ୍ଡର କୁଞ୍ଚକୁଞ୍ଚିଆ ବାଳକୁ ଅତି ଯତ୍ନରେ ସ୍ତ୍ରୀଙ୍ଗି ପକେଇ ବାହାରିଲା ।

ତାଲକୁ ନ ଓହ୍ଲାଉଣୁ ପ୍ରଫୁଲ୍ଲ କହିଲା, ଆଶାକରେ ଆଜ ଚୋର ଖିଆଟା ଆମ ଘରେ ହେବ । ତେଣୁ ରାନ୍ଧିବା ପାଇଁ ପୁଷ୍ପାଙ୍କୁ ମନା କରିଦେ ।

'ଧନ୍ୟବାଦ ।'

+ + +

'ଏଥର ବସନ୍ତୁ ।' ଠା ସଜେଇ ଦେଇ ଜ୍ୟୋତି କହିଲା ପ୍ରଫୁଲ୍ଲ ଉଦ୍ଦେଶ୍ୟରେ ।

'ବସ ପ୍ରସନ୍ନ । ଏଇଟା ତୋର ନିଜ ଘର ।' 'ଜ୍ୟୋତି ଶୁଣ । ......ଏ, ଆସ ଇ ଆଡ଼କୁ । ଓଃ ଲାଜ କାହାକୁ — ଆସନା ।'

ଭିତର ପଟୁ ଜ୍ୟୋତି ଖୁ କରି ହସି ଦେଲା କିନ୍ତୁ ଆସି ପାରିଲା ନାହିଁ ।

'ଶୁଣ । ଆଃ ମୁଁ କଣ କରିବ ? ଏ ବିଂଶ ଶତାବ୍ଦୀର ଆହୁରି ପଛକୁ ଫେରି ଯାଉଚ କାହିଁକି ହେ ଓଡ଼ିଆଣୀ ! ବନ୍ଧୁକୁ କଣ ଏପରି ଅଭ୍ୟର୍ଥନା କରାଯାଏ ? ତା ପଛରେ ଯେ ଲୁଣ ଦେଇନ ।'

ସ୍ବାଇଁକରି ଝୋକା ପତରରେ ଲୁଣ ଧରି ଆସିଲା ।

ପ୍ରଫୁଲ୍ଲ ନାଲି ଆଖି ଦେଖାଇ କହିଲା, ଆବେ ତୁ ଯା ।

ଶେଷରେ ବାଧ ହେଲା ଜ୍ୟୋତି । ପ୍ରସନ୍ନର ସାମନାକୁ ଆସିବାକୁ । ମୁହଁର ଅଧେ ଯାଏ ଲୁଗାକାନି ଢାଙ୍କି ଲୁଣ ଆଣି ରଖିଦେଇ, ବିଜୁଳି ପରି ପୁଣି ଅନ୍ତର ହୋଇଗଲା ସେଠୁ ।

ପ୍ରସନ୍ନ ଜ୍ୟୋତିର ମୁହଁକୁ ଚାହିଁପାରି ନଥିଲା । ତଥାପି ସେ ଲଜ୍ଜିତ ହୋଇ କହିଲା, ସେତେ ବ୍ୟସ୍ତ କରିବା ଭଲ ନୁହେଁ ପ୍ରଫୁଲ୍ଲ ।

'ନା ଭାଇ, ଏମାନଙ୍କ ଏ ସଙ୍କୀର୍ଣ୍ଣ ସ୍ୱଭାବକୁ ବଦଳାଇବାକୁ ପଡ଼ିବ ।'

'ତଥାପି ସେଇତ ତାଙ୍କର ସ୍ୱଭାବ ।'

'ଜ୍ୟୋତି, ଆଉ ଟିକିଏ ତରକାରୀ ।' ପ୍ରଫୁଲ୍ଲ ଏଥର ଟିକିଏ ରୁକ୍ଷ ଗଳାରେ କହିଲା ।

ଏଥର ଆଉ ସେତେ ଠାଣି ଓଠାର ନ ହୋଇ ଜ୍ୟୋତି ଆଣିଲା ତରକାରୀ ।

'ଦିଅ ପ୍ରସନ୍ନକୁ ।'

ପ୍ରସନ୍ନର ଗିନାରେ ତରକାରୀ ଅଜାଡ଼ୁ ଅଜାଡ଼ୁ ପ୍ରସନ୍ନ କହିଲା, ଥାଉ । ହଁ ହଁ ହେବ ।

ପ୍ରଫୁଲ୍ଲ ଆରମ୍ଭ କଲା, ଶୁଣିଲା ପ୍ରସନ୍ନ । ପ୍ରକୃତରେ ଜ୍ୟୋତି ଏଠି ବଡ଼ ଅସୁବିଧାରେ ପଡ଼ିଛନ୍ତି । ଅନେକ ସମୟରେ ତାଙ୍କୁ ଏକଲା ଘରେ ଭଲ ଲାଗୁନାହିଁ । ଭାବୁଚି, ତେଣୁ କରି ମୋର ଭଉଣୀ ମାଧବୀକୁ ନେଇ ଆସିବି । କିନ୍ତୁ ବି. ଏ. ପରୀକ୍ଷାଟା ଆଗରେ । ତାକୁ ଛୁଟି ମିଳିବ ଏଠିକି ଆସିପାରୁ ନାହିଁ । ମାଧବୀ ଯେମିତିଆ ଟୋକୀ ସେ ଆସିଲେ ଅନେକ ଦୂର ଭଲ ହୁଅନ୍ତା ।

'ନିଶ୍ଚୟ ।' ପ୍ରସନ୍ନ ପାଣି ପିଇବାରେ ମନ ଦେଲା । ଇଚ୍ଛା ନ ଥିଲେ ବି ସବୁଯାକ ପାଣି ପିଇଦେଇ ସେ କହିଲା 'ଆଉ ମନ୍ଦେ ।'

ଦୁଆର ସେ ପାଖେ ଜ୍ୟୋତି ଏ ସବୁ ଲକ୍ଷ୍ୟ କରୁଥିଲା । ଭିତରୁ ନ ବାହାରୁଣୁ ପାଣି ଧରି ହାଜର ହେଲା ।

ପ୍ରଫୁଲ୍ଲ କହିଲା, 'ସାବାସ୍ । ପ୍ରସନ୍ନ ଆମର ପର ନୁହେଁ ଜ୍ୟୋତି । ତମେ ତାକୁ ଲୁଚିବାର ଅର୍ଥ ନିଜ ଲୋକଙ୍କୁ ଅପମାନିତ କରେଇବା ।'

ଫେଲେଇ ଯାଉ ଯାଉ ଜ୍ୟୋତି କହିଲା, ଏଇଥିପାଇଁ ତ ମୁଁ କହୁଚି, ମାଧବୀଙ୍କ ଚଞ୍ଚଳ ନେଇ ଆସ । ସେ ଯିନା ତୁମ ବନ୍ଧୁମାନଙ୍କୁ ଉଚିତ ସମ୍ମାନ ଦେଇ ପାରିବେ ।

ପ୍ରଫୁଲ୍ଲ ହସିଲା — ପାଗଳ !

ପ୍ରସନ୍ନ ଖାଲି କୋଣେଇ କୋଣେଇ ଚାହିଁଲା ।

\+ \+ \+

ରବି ଶୋଇଲା ବେଳ । ପ୍ରଫୁଲ୍ଲ କହିଲା, 'ଶୁଣିଲ ଜ୍ୟୋତି ଖାଲି ଏତିକି ନୁହେଁ । ପ୍ରସନ୍ନକୁ ଆହୁରି ହାତ ମୁଠାକୁ ଆଣିବାକୁ ହେବ । ଯେମିତି ହେଉ ପରୀକ୍ଷା ହରୁ ସରୁ ମୁଁ ମାଧବୀଙ୍କ ଘେନି ଆସିବି । ତା ଆଗରୁ ପ୍ରସନ୍ନର ମନରେ ତମେ ଟିକିଏ ପ୍ରଭାବ ପକେଇଥିବା ଦରକାର ।'

\+ \+ \+

ସେ ଦିନ ରବିବାର । ପ୍ରଫୁଲ୍ଲ ପାଠାଗାର ଆଡ଼େ ବୁଲି ଯାଇଚି । ପ୍ରସନ୍ନ ଆସି ଡାକିଲା 'ପ୍ରଫୁଲ୍ଲ ।' ଚଞ୍ଚଳ କବାଟ ଖୋଲିଦେଇ ଜ୍ୟୋତି ଡାକିଲା, ଆସନ୍ତୁ ।

ଘରେ ପଶୁ ପଶୁ ପ୍ରସନ୍ନ କହିଲା— ପ୍ରଫୁଲ୍ଲ ଗଲା କୁଆଡ଼େ ?

କୁଆଡ଼େ ଯିବେ ? ଏଇକ୍ଷଣି ଫେରିବେ ଯେ । ତୁମେ ବସ । ଚା ଟିକିଏ ଆଣୁଚି ।

ଅନେକ କଥା ପରେ— ଚା ପରଶୁ ପରଶୁ ଜ୍ୟୋତି ପଚାରିଲା ହସି ହସି— ହଁଭେ ପ୍ରସନ୍ନ ବାବୁ, ଅବିବାହିତ ରହିବା ଦ୍ୱାରା ତୁମର କିଛି ଅସୁବିଧା ହେଉ ନାହିଁ ?

'ହେଉଚି । ତେବେ ତୁମମାନଙ୍କର ସ୍ନେହ ପ୍ରୀତି ଯୋଗୁଁ ଅସୁବିଧା ପରି ଲାଗୁନାହିଁ ।'

'ଆଚ୍ଛା, ଆମର ମାଧବୀ ପରି ଝିଅଟିଏ ହେଲେ ...... ।'

'ମୋର ଆପତ୍ତି ନାହିଁ । ତେବେ ସମସ୍ତେ ତୁମରି ପରି ଗୃହିଣୀ ହେବେ ବୋଲି ମୋର ବିଶ୍ୱାସ ନାହିଁ ।'

ଜ୍ୟୋତି ମୁହଁ ଗମ୍ଭୀର କଲା ।

ଠିକ୍ ଏତିକି ବେଳେ ପହଞ୍ଚିଲା ପ୍ରଫୁଲ୍ଲ । 'ଆରେ ବେଶ୍ ତ ଗପ ଜମେଇ ଦେଇଚ ।' ଆଗ ବଢ଼ି ଜ୍ୟୋତି କହିଲା, 'ହେଇଟି ପହଞ୍ଚିଛନ୍ତି ସେ । ପଚାରୁଥିଲି ଖାଲି ମାଧବୀର ବାହାଘର କେବେ ହେବ ?'

ପ୍ରଫୁଲ୍ଲ ହସିଲା ।

'ହିଁ, କଣ କହୁଥିଲି କି, ଆଜି ମାଧବୀର ଶଳାଲ୍‌ଟି ବାହାରିଛି ଆଉ ଆନନ୍ଦର କଥା, ସେକେଣ୍ଡ ହୋଇଚି ସେ । ମୁଁ ଠିକ୍ ସକାଳେ ବାହାରିବି । ଦୁଏଚ ଚାରି ଦିନ ପରେ ମାଧବୀକୁ ଏଠି ପହଞ୍ଚେଇ ଦେବି ।'

'ଭଲ ପ୍ରସ୍ତାବ ।' ଜ୍ୟୋତି ଠିଆ ହେଲା ।

+ + +

ସେ ଦିନ ଏକ୍ସପ୍ରେସ୍ ବସ୍ ଆସିବାକୁ ବେଶି ଡେରି ହେଲା।

ଗନ୍ତି ସାଡ଼େ ନ! ମାଧବୀ ଆଜି ନାମାଳ ଧରି ପ୍ରଫୁଲ୍ଲ ପହଞ୍ଚିଲା ଘରେ। ଦରଜାରେ ହାତମାରି ଡାକିଲା। ନଦ ବାଉଳାରେ କିଏ କିଏ ବୋଲି ଗୃହକର କବାଟ ଖୋଲିଲା।

ଖାଲି ଖଟଟା ପାଖରେ ଠିଆହୋଇ ପ୍ରଫୁଲ୍ଲ ପଚାରିଲା, ମାଁ କାହାନ୍ତିରେ!

ଡରି ଡରି ଗୃହକର କହିଲା, ପ୍ରସନ୍ନ ବାବୁଙ୍କ ସଙ୍ଗେ ସିନେମା···

ସେ ଆଜି କହି ପାରିଲା ନାହିଁ।

ଜୟପୁର କେବେ ଦେଖିଛନ୍ତି ?

ପ୍ରାୟ ପଚିଶି ହଜାର ନର ନାରୀଙ୍କ ନଶ୍ୱର ଦେହ, ମନ— ମିଥ୍ୟା ଜର୍ଜରିତ ଜୀବନ ଯାପନର ହୁ ହା ଭିତରେ ଅନ୍ୟାନ୍ୟ ଅନେକ ସହର ପରି ସର୍ବଦା କୁଳୁମୁଳୁ ହେଉଥାଏ ଏ ଜନବସତି । ସାମାଜିକ ମଣିଷ ପଣିଆର ଆନ୍ଧ୍ର ଆଡୁ ସ୍ରୋତରେ ଆସୁଥିବା ପାଉଁଶ ମିଶା ସିମେଣ୍ଟ ପରି ଅସତ୍ୟ ଉପାଦାନରେ ନିର୍ମିତ ଭିତ୍ତି ଉପରେ ପ୍ରତିଷ୍ଠିତ ଅବସ୍ଥିତି, ସବୁବେଳେ ହେଉଥାଏ ଉହାଳ ବିକଳ ।

ଜୟପୁରର ଦଶହରା ଉତ୍ସବ କେବେ ଦେଖିଛନ୍ତି ? ରାତିରେ ଦେଖିଛନ୍ତି ? ଆଖି ମଳି ମଳି, ପାଉଡ଼ର ଦୁଧରେ ତିଆରି ଚା ଖାଇ ଖାଇ ନିରୀକ୍ଷଣ କରିଛନ୍ତି, ସାରା ରାତି ଏପାଖ ସେପାଖ ଟହଲ ମାରୁଥିବା ନର ନାରୀଙ୍କୁ ? ତରୁଣ ତରୁଣୀଙ୍କୁ ? ଆଦିବାସୀ ତରୁଣୀ ଅଣ-ଆଦିବାସୀ ଓ ତରୁଣ, ପ୍ରୌଢ଼, ମଦୁଆ, ଗଞ୍ଜିଆମାନଙ୍କ ହୃତ୍ତୁ ହୃତ୍ତୁ ପ୍ରାଣର ଚରମ ବ୍ୟାକୁଳତା ଲକ୍ଷ୍ୟ କରିଛନ୍ତି ? ଜାଣିସୁ ସହିତ ପ୍ରତିଷ୍ଠା ଲାଗି ସତେ ଯେମିତି ସେମାନେ ଉତ୍ତେଜିତ ଅବୟବଗୁଡ଼ିକୁ କାମନା ଅନଳରେ ଝାସ ଦିଆଇବାକୁ ବ୍ୟଗ୍ର ହୋଇ ଉଠିଛନ୍ତି, ହେଉପଛେ କ୍ଷଣକ ପାଇଁ ।

ଏ ବର୍ଷ ଦଶହରା ରାତିରେ ପ୍ରବଳ ଜନସମାଗମ ସହରର ପ୍ରଧାନ ସଡ଼କକୁ ବନ୍ଧୁ ପାଗଲା ଜୀବନ-ପ୍ରବାହର ଏକ ଉଚ୍ଛ୍ୱସିତ ସ୍ରୋତରେ ପରିଣତ କରି ଦେଇଥିଲା । ଅସଂଖ୍ୟ ଆଦିବାସୀ, ଅଣ-ଆଦିବାସୀ ତରୁଣୀ ନୂଆ ଲୁଗା ପିନ୍ଧି, ଚୁଟିରେ ଫୁଲ ଖୁଞ୍ଚି, ଅତର ଲଗାଇ, ଜଡ଼ା, ହଳଦିରେ ମୁଣ୍ଡକୁ, ମୁହଁକୁ ସର ସର କରି ଏପାଖ ସେପାଖ ଅନବରତ ଲସର ପସର ହେଉଥାନ୍ତି । ପାନ ଚୋବାଇ, ପାଟିରେ ଜାକ ହସ ହସ ମୁହଁରେ ପର୍ ପର୍ ଛେପ ପକାଉଥାନ୍ତି ।

ଇଁ ହିଁ, କି ଗନ୍ଧ! ଛି, ମଣିଷ ନାକର ପବନ, ଦେହ ମୁହଁର ସାନଧ ଏଡ଼ିକ ଦୁର୍ଗନ୍ଧମୟ ! ମଣିଷର ଦେହ ଯେ ଶହେ ନର୍କର ସମାହାର, ମିଛ ନୁହେଁ ପରା ! ହେଲେ ଏମାନେ, ଏଇ ସହରିଆ, ଅସହରିଆ ରସିକ ପୁରୁଷମାନେ ତାଙ୍କ ଦେହରେ ଆପଣା ଦେହଟାକୁ ଟିକିଏ ଘୋଷାଡ଼ି ଦେବା ଲାଗି, ତାଙ୍କର ମୁହଁ ପାଖରେ ଆପଣା ମୁହଁଟାକୁ ଏକ ସେକେଣ୍ଡ ପରାଇ ଦେବାକୁ ଏମିତି ପାଗଳଙ୍କ ଭଳି ଧାଉଁଛନ୍ତି କାହିଁକି ? ଗୋଡ଼ ଘୋଳୁ ନାହିଁ ? ଘଣ୍ଟା ଘଣ୍ଟା—

ରାତି ଅଧ ବେଳକୁ—

କୁନ୍ତରଖାଲ ଗାଁର ପରଜା ଘରର ବୋହୂ, ଝିଙ୍ଗରା, ବନ୍ଦ ରହିଥିବା ଗୋଟେ ଦୋକାନ ପିଣ୍ଡାରେ ଢୁଳାଉ ଥିଲା । ପାଖରେ ତାର ଆହୁରି ଅନେକ ଗାଁର ପୁଅ, ଝିଅ ବସିଥିଲେ, ଶୋଇଥିଲେ, ନିଦ ମଳମଳ ଆଖିରେ ପଟୁଆର ଦେଖୁଥିଲେ । ଝିଙ୍ଗରାର ଘଇତା ଅନ୍ୟ ଛ ଜଣ ଚିହ୍ନା ଜଣା ଦୂର ଗାଁର ଧାଙ୍ଗଡ଼ୀମାନଙ୍କ ସାଙ୍ଗରେ ବୁଲି ଯାଇଥିଲା । ଦଶହରାପଦାର ଖଣ୍ଡିଆ କାନ୍ଥ ତଳେ ବସି ଜହ୍ନ ଆଲୁଅରୁ ରସ ପିଉଥିଲା । ହସୁଥିଲା । ତାଙ୍କ ଦେହ ପାଖରେ ଆପଣା ଦେହର କ୍ଷୁଧାକୁ ପରାଇ ଦେଇ ସ୍ୱର୍ଗ ସୁଖର କଳ୍ପନା କରୁଥିଲା ।

ହିଂଷ୍ରରେ ଦେଉସୁର ଭୂଅ ପରଜା ଶହେ ହାତ ଦୂରରେ ଥିବା ଲୁହା ଦୋକାନ ପିଣ୍ଡାରେ ବସି, ସାଙ୍ଗ ସାଥିଙ୍କ ସହ ତାର କାମନା-ଝଦଗ୍ଧ କ୍ଷୁଧାତୁର ଆଖିରେ ଚୂଡ଼ିଆଡ଼କୁ ଚାହୁଁଥିଲା, ଜଳ ଜଳ କରି ।

ପେଟ ପୋଷିବା ଲାଗି, କୃଟିମ୍ବ ପରିପୋଷଣ ନିମନ୍ତେ ଗିରିଧାରୀ ପଟ୍ଟନାୟକ ବାଲେଶ୍ୱରରୁ ଆସି ମାଷ୍ଟ୍ର ହୋଇଛନ୍ତି କୋରାପୁଟ ଜିଲ୍ଲାର ଜୟପୁର ପାଖ ପଣଯପୁଟ ଗାଁରେ । ଅନ୍ୟମାନଙ୍କ ସାଙ୍ଗରେ ସେ ବି ଆସିଥିଲେ ଯାତ୍ରା ଦେଖିବାକୁ । ବୁଲି ବୁଲି ଯାତ୍ରା ଦେଖୁ ଦେଖୁ ବହୁ ତରୁଣୀ ମୁହଁର ଯୌନ ଆବେଦନ ତାଙ୍କର ପୁରୁଷତ୍ୱକୁ ଚହଲାଇ ଦେଲା । ସେ ବ୍ୟଥିତ ହୋଇ ସଡ଼କ କଡ଼ର ସେହି ବନ୍ଦ ଚୂଡ଼ା ଦୋକାନ ପିଣ୍ଡା ପାଖରେ ଠିଆ ହେଲେ । ମନରେ ତାଙ୍କର ନିଆଁ ଜଳୁଥିଲା । ବାଲେଶ୍ୱର ଜିଲ୍ଲାର ଏକ ସନ୍ତସନ୍ତିଆ ଅପରିଚ୍ଛନ୍ନ ଗଳିରେ, ଭଙ୍ଗା କୁଡ଼ିଆ ଘରେ ପ୍ରଦର ରୋଗରେ ପୀଡ଼ିତା ଶେଥା ମୁହଁରେ ଆତୁରତା ଛଡ଼ା ଆଉ କି ଆକର୍ଷଣ ଅଛି ଯେ, ସେ କାଳିଦାସଙ୍କ ମେଘଦୂତର ନାୟକ ପରି ଚିଠି ଲେଖି ଲେଖି ଚରିତାର୍ଥ ହୋଇ ରହିଥିବେ ?

ଗିରିଧାରୀ ଭାବିଲା, ସେ ଜଣେ ବା କିଏ ବା କି ଧା ବୋଧ କଲେ ସମାଜର କେଉଁ ବଳକା ଉପକାରଟା ହୋଇଯିବ କି ? ଏ ଯେ ହଜାର ହଜାର ତରୁଣ ତରୁଣୀ ଏଠାକୁ ଆସିଛନ୍ତି — କାହିଁକି ଆସିଛନ୍ତି ? ଦଶହରା ପଟୁଆର ଦେଖିବାକୁ ? ଯଦି ତାହାହିଁ ହୁଏ ପଟୁଆର ତ ଗଲାଣି । ସରିଗଲାଣି ଉତ୍ସବର ସମସ୍ତ କାର୍ଯ୍ୟକ୍ରମ । ଫେରିଯାଉ ନାହାନ୍ତି ?

ହଜାର ହଜାର ପୁରୁଷ ଯାହା କରିବାକୁ ଏ ରାଜ୍ୟରେ ନ ଶୋଇ ନ ବସି ହରବର ହେଉଛନ୍ତି— ସେ ତ ସେହି ତାହା କରେ ଅଧିକା କଣ ପାପ ହୋଇଯିବ, ଅଧର୍ମ ହୋଇଯିବ ?

ଗିରିଧାରୀ ଶୁଙ୍ଘିଲା, ଝିଙ୍ଗରୀର ଦେହରେ ବଳିଷ୍ଠ ଘର ସଂସାର କରି ଆସିଥିବା, ବଦୁଆ, ଚେଲିଆ, ଲେଙ୍ଗୁଡ଼ିଆ ଆଶିକୁ ! ଜଳଝା, ହଳଦୀ ମଖା ଉଷ୍ଣ କପାଳ ତଳେର ଜଳଜଳ ଆଖିର ଝଲକକୁ । ଘୋଡ଼ାଇଲା ହଳୁ ମାଙ୍କଡ଼ ଭାତ ଆଳମାରିରେ ଛାଇ ନ ଲାଗି ରହିଥିବା ପାଚିଲା ଫଳକୁ ଶୁଙ୍ଘିଲା ପରି, ଲାଜ ସରମର ମୁହଁରେ ଝିଙ୍ଗରୀର ମୁହଁକୁ ପୁଣି ପୁଣି ଶୁଙ୍ଘିବାକୁ ଲାଗିଲା ଗିରିଧାରୀ ପଟ୍ଟନାୟକ ।

ଝିଙ୍ଗରୀ ଏପାଖ ସେପାଖକୁ ଶୁଙ୍ଘୁ ଶୁଙ୍ଘୁ ଦେଖିଲା, ତାକୁ କିଏ ଜଣେ ପରଜା ଜାତିଠୁଁ ଉଚ୍ଚ ଜାତିର ପୁରୁଷ ଅନାଉଛି । ତରୁଣୀ ମନରେ ଗର୍ବ ଜାତ ନ ହେବ କିପରି ? ତାର ମୂଲ୍ୟ ଆଜି ଏ ସଂସାରରେ ବଢ଼ିଯାଇଛି ଯେ ! ଯାହା ଆଜି ପର୍ଯ୍ୟନ୍ତ ସେ ଆଦୌ ଅନୁଭବ କରିପାରି ନ ଥିଲା ।

ଯିଏ ତାକୁ ଆଦର କରିଥିଲା, ହୃଦୟ ଯିଏ ତାକୁ ଶିର ନଜର କରି ଆଗ୍ରହରେ ଦେଖି ନେଇଥିଲା, ସେ ତ ଏବେ ଅନ୍ୟମାନଙ୍କୁ ଭଲ ପାଇଲଣି । ତା ନିକଟରେ ଝିଙ୍ଗରୀର ରୂପ, ଦେହ ଓ ପ୍ରାଣର ମୂଲ୍ୟ ଯଥେଷ୍ଟ କମି ଗଲାଣି । ଦେଦରା ଟିଣ ସେଡ଼ି ପଞ୍ଝ ହେଲଣି ।

ଅନେକ ସମୟ ବିତିଗଲା ।

ଗିରିଧାରୀ ପଟ୍ଟନାୟକ ଠିଆ ଠିଆରେ ଗୋଟାଏ ଉପରେ ଗୋଟାଏ ହାଡ଼ ମୋଡ଼ିବାକୁ ଲାଗିଲା । ପାଟିରୁ ବୋହି ପଡ଼ୁଥିବା ଲାଳ ପୋଛିଲା । ମୁଣ୍ଡ କୁଣ୍ଡେଇ ହେଲା । କେତେ ଥର କାଶିଲା । ଦି ତିନି ଥର ହାଙ୍ଗି ମୋଡ଼ ମଧ୍ୟ ହେଲା । ଛନ୍ନ ଛନ୍ନ ମନରେ ଗୃହ ଆଡ଼କୁ

ଅନାଇ ସାର, ସମ୍ପର୍ଣରେ ଝିଣ୍ଟଶୀର ମାଳକଇଁର ପାଖୁଡ଼ା ପରି ଆଖି ଯୋଡ଼କ ଉପରେ ଦୃଷ୍ଟି ସ୍ଥିର କରି ରସ ଶୋଷି ନେଉଥିଲା । ହାଲିଆ ହୋଇ ପଡ଼ୁଥିଲା ।

ଝିଣ୍ଟଶୀର ଆଖିରୁ ମଧ ନିଦ ଉଭେଇ ପଡ଼ିଲା ପାଦ ତଳକୁ । ସେ ମଧ ଭ୍ରୂଲତା ତଳକୁ ଅଣେଇ ଅଣେଇ ଗୁହିଁଲା । ଧୂଆଁ ପାଚୁଳା, କାଳିଆ ମିଶା ଧୂଆଁଳିଆ ଝିକ ଝିକ ଦାନ୍ତଗୁଡ଼ିକ, ପ୍ଲାଷ୍ଟର ଛଆଁର କୋଣେଇରେ ଓଠ ପରି ଓଠ ହପାଳ ଭିତରେ ରସକ୍ରୀଡ଼ା ଆରମ୍ଭ କରିଦେଲେ । ପଞ୍ଚାୟତ ମାଷ୍ଟ୍ରର ଶସ୍ତା ଖାଦ୍ୟରୁ ପ୍ରସ୍ତୁତ ହାଲୁକା, ହେଗୁଆ ରକ୍ତ ଟିକିଏ ମଜାର ହୋଇ ଫୁଟିଲା । ଗରମ ହୋଇଗଲା ।

ଝିଣ୍ଟଶୀ ଠିଆ ହେଲା ।

ଗିରିଧାରୀ ପିଣ୍ଡା ପାଖକୁ ଗଲା ।

ଝିଣ୍ଟଶୀ ପାଖ ପାନ ଦୋକାନରୁ ପାନ କିଣିବାକୁ ଉଭେଇ ଆସିଲା ତଳକୁ । ରାସ୍ତାର ବିଜୁଳି ଆଲୋକରେ ସେ ପୁରାଣର ରମ୍ଭା ପରି ଦିଶିଲା । ଗିରିଧାରୀର ଧୈର୍ଯ୍ୟ ଚ୍ୟୁତ ହେଲା । ତାର ମାନବିକ ଚେତନା ଆତ୍ମହତ୍ୟା କଲା । ସେ ବିଜୁଳି ବେଗରେ ଅଗ୍ରସର ହୋଇ ଝିଣ୍ଟଶୀର ଦେହରେ ନିଜ ଦେହକୁ ଯୁଝାଇ ଦେଲା । ତାର କୋମଳ ଦେହର ଶୀର୍ଷଦେଶ ଆଡ଼କୁ ହାତ ବଢ଼ାଇଲା ।

ଭୁସୁର୍ ପରଜାର ଆଖିକୁ ଦୃଷ୍ଟିକୁ ଏମାନେ ଏଡ଼ାଇ ପାରିଲେ ନାହିଁ । ସେ ଭାଇ ବୋହୂର ଦେହ ସହିତ ଇତର ପୁରୁଷ ଦେହର ସ୍ପର୍ଶକୁ ସହି ପାରିଲା ନାହିଁ । ତାର ଗରମ ରକ୍ତ ଓଲଟା ଭାବରେ ଗରମ ହୋଇଗଲା । ସାଙ୍ଗ-ସାଥିଙ୍କୁ ଧରି ସେ ଆକ୍ରମଣ କଲା ।

ଧଡ଼୍ ଧାଡ଼୍ ଧଡ଼୍ ଧାଡ଼୍ ବିଧା ଗୋଇଠା, ମୁଥ—

ଗିରିଧାରୀ ପଟ୍ଟନାୟକ ରକ୍ତାକ୍ତ ଶରୀର ନେଇ ପ୍ରାଣ ବଳକରେ ପଳାଇ ଯିବାକୁ ଉଦ୍ୟମ କଲା । କିନ୍ତୁ ପଚେଜା ହେଉଣ୍ଟି ଆଉ ଲୁହାପରି ହାତ ଗୋଡ଼ର କ୍ଷିପ୍ରତା ନିକଟରେ ସେ ବାରମ୍ବାର ହାର ମାନିଲା ।

ଖଦଡ଼ି ପିନ୍ଧି କିଏ ଜଣେ ଧୋବ ଧାଉଳିଆ— ବୋଧହୁଏ ଯୋଡ଼ ଖୋଜ୍ ଖୋଜ୍ ଏ ଦୃଶ୍ୟ ଦେଖି ଫୋନ୍ କରି ଡାକିଲା ପୋଲିସକୁ । ପୋଲିସ ଆସିଲେ, ବାନ୍ଧି ନେଇଗଲେ ଭୂସୁଁକୁ, ସମ୍ବାରୁକୁ, ଗିରିଧାରୀ ପଟ୍ଟନାୟକକୁ ।

ଯାହା ଦେଖିବାର, ଜାଣିପୁ ସହରର ପ୍ରାରମ୍ଭିକ ଶୁଭଦାନ କରିବାକୁ ଆତୁର ପ୍ରାଣର ସବୁ ଆତୁରତା ନିଃଶେଷ ହୋଇଗଲା, ହାଜତ ଘରର ଲୁହା ଛଡ଼ ଫାଙ୍କରେ ।

ପକେଟରେ ଯେତେ ପଇସା ଥିଲା, ସୁନାମୁଦି, ଫାଉଣ୍ଟେନ୍ ପେନ୍ ହାଙ୍ଗରେ—ସେତିକିଠି ଗଲା ଖାକି ପୋଷାକର ଖାଙ୍କା ପକେଟକୁ । ପାହାନ୍ତିଆ ପହରକୁ ସମସ୍ତେ ମୁକୁଳିଲେ । ସେତେ-ବେଳକୁ ମାଟି, ପାଣି, ପବନ ସବୁ ଥଣ୍ଡା ହୋଇ ଯାଇଥିଲା ।

ଦଶହରା ଗହଳ ଭଙ୍ଗି ଆସୁଥିଲା ।

ବସନ ତ ଫର୍ ଫର୍ ଉଡ଼ୁ ନ ଥିଲା !

ହୁଏତ ମୋଟା ଖଦଡ଼ ହୋଇଥିବ । ସ୍ୱାଧୀନତା ଆକାଂକ୍ଷୀ ମଣିଷର ହୃଦୟ ଯେପରି ଅଚଳ — ହୋଇଥିବ ସେଇ ସ୍ୱାଧୀନତା ସାଧନ ପଥର ପାଥେୟ ଖଦଡ଼ ଖଣ୍ଡ ମଧ୍ୟ ସେପରି — ପରାଧୀନ ଭାରତର ବର୍ଦ୍ଧମାନ ବାତ୍ୟା ତାକୁ ଦୋହଲେଇ ପାରୁ ନଥିବ ।

ତେବେ ସେଥିରେ ଆଉ ରହିଲା କି ସରସତା ?.

ଚଞ୍ଚଳ ଯୌବନର ନବଡ଼ ମାଦକତା ହୁଏତ ବୁକୁ ତଳେ ଲୁଚିହୋଇ ରହି ଯାଇଥିବ; ତା ପୁଣି ବାହାରକୁ ଫୁଟି ଉଠିବ କେମିତି ?

ସତେ ତ ଧଳା ବ୍ଲାଉଜ ଉପରେ ଛୁଡ଼ିକା ଛୁଡ଼ିକା ସବୁଜ ଓ ନାଲି ଦାଗମାନ ଥିଲା । ସେ କି ବାସ୍ତବ ସୌନ୍ଦର୍ଯ୍ୟର ପରିପୂରକ ନୁହେଁ ?

ହସି ଉଠିଲି । 'ଉଡୁମା'— ଡାହାଣ ପାଖର କେଉଁ କେଉଁଆ ଓ ହରୁଆ ଝରଣାର ଅପ୍ରତିହତ ସୁନ୍ଦର ଧାରା ପରି, ମୋ ମନର ଭାବ ଧାରଟି ଆସ୍ତେ ଖସି ଆସୁଥିଲା ତଳକୁ । କିନ୍ତୁ 'ମାର୍ତ୍ତଣ୍ଡ'ର ଦୈନନ୍ଦିନ କର୍ତ୍ତବ୍ୟର ଗଭୀର ଗର୍ତ୍ତ ହାବୁଡ଼ରେ ପଡ଼ି, ତାହା ଆଗେ ମିଳାଇଗଲା ତହିଁରେ ।

ବନ୍ଧ୍ୟା ପଲ୍ଲୀର ନିଃସଙ୍ଗ ଜୀବନକୁ ନେଇ ପଡ଼ିଛି ଜଗତର ଗୋଟାଏ କୋଣରେ ମୁଁ । ନିର୍ଜନତା ମୋର ଚିର ଓ ପ୍ରିୟ ସହଚରୀ । ପିଲାଟି ଦିନରୁ ପ୍ରାଣ ଦେଇ ଭଲପାଇ ଆସିଛି ମୁଁ ତାକୁ । ନଈ କୂଳର, ଗଛ ମୂଳର, ବନ୍ଧ ହୁଡ଼ାର ନିର୍ଜନତା ମୋର ଏ ଶ୍ରାନ୍ତକ୍ଲାନ୍ତ ପ୍ରାଣକୁ, ବିଶେଷ ଶାନ୍ତି ପାଇବାର ଉପାଦାନ ଯୋଗାଇ ଥାଏ । ତେଣୁ ବର୍ତ୍ତମାନ ସୁଦ୍ଧା ତାକୁ ମୋର ଅଶେଷ ଧନ୍ୟବାଦ ।

ଭାବେ—ଖାଲି ଭାବେ; ଏପରି କେତେ କଣ ଭାବେ । ଚବିଶ ଘଣ୍ଟା ବ୍ୟାପି ଭାବେ ।

କେବେ କେବେ ପାଖ ସହରର ଆଡ଼େ ବୁଲି ଯାଏ । ସେଠି ତୁଳନା କରି ବସେ—ପଲ୍ଲୀର ନିଛାଟିଆ କୁଡ଼ିଆ ଘରକୁ ଓ ସହରର କୋଳାହଳମୟ ବିଶାଳ ସଉଧକୁ ନେଇ । କିଛି ଠିକ୍ କରିପାରେ ନା ।

ଦିନକର କଥା । ଜୟପୁର ଯାଇ ୭ ଦିନ ହେବ । ସେ ଦିନ ମଙ୍ଗଳବାର । କାରଣ ଠିକ୍ ମନେଅଛି 'ପ୍ରଜାବାଣୀ'ରେ ଖଣ୍ଡିଏ କବିତା ଦେଖିଥିଲି, କିଏ ଲେଖିଥିଲା ମନେ ନାହିଁ । କିନ୍ତୁ କବିତାର ଆମୂଳଚୂଳ ବୀର ରସ ଭରା । ପଦ ପଦକେ ଫୁଟି ଉଠୁଥିଲା, ଜାପାନୀ ଯୁଦ୍ଧ ପାଇଁ ବ୍ରିଟିଶ ସରକାରଙ୍କ ପକ୍ଷରୁ ତୀବ୍ର ଆହ୍ୱାନ—

ଘଟଣାଟି ହେଉଛି, ସେ ଦିନ ଉପର ଓଳିର ! ସଂପୂର୍ଣ୍ଣ ପ୍ରାୟ ତିନଟା ହେବ । ମେନ୍ ରୋଡ଼ର ବାଙ୍କ ଡେଇଁ, ହାଟକେଶ୍ୱର ରୋଡ଼ର

କେତେ ଦୂରକୁ ଆଗେଇ ଯାଇଛି । କିଏ ଜଣେ କାର୍ ଭିତରୁ ଡାକିଲା— "ଅନିଳ ବାବୁ ! ନମସ୍କାର ।"

"କିଏ ?" କହି ବିସ୍ମାରିତ ନେତ୍ରରେ ଏଣେ ତେଣେ ଚାହିଁଲି । ଯାହା ଦେଖିଲି, ତହିଁରେ ଆଖି ମୋର ବିଶ୍ୱାସ କରି ପାରିଲା ନାହିଁ । ଯାହା ଶୁଣିଲି ମଧ୍ୟ କାନ ତାହା ବିଶ୍ୱାସ କଲା ନାହିଁ ।

ଜଣେ ତରୁଣୀ ଆବେଗଭରା ଗଳାରେ କାର୍ ଭିତରୁ ଆହ୍ୱାନ କରୁଛନ୍ତି ମୋତେ ।

ପ୍ରତି ନମସ୍କାର ଜଣାଇ ପାଖକୁ ଗଲି । ସେ ବଡ଼ ଉତ୍କଣ୍ଠିତ ଗଳାରେ କହିଲେ— "ଆସନ୍ତୁ ଭିତରକୁ! ଓଃ ହଃ ପରିଚୟଟା ଆଗରୁହିଁ ନ ଦେଇ ବଡ଼ ସନ୍ଦେହରେ ପକାଇଛି ଆପଣଙ୍କୁ । କ୍ଷମା ଦେବେ । ମୋର ଭାଗ୍ୟ ଏତିକ ମନ୍ଦ ଥିଲା ଯେ, ଆପଣଙ୍କ ପରି ଜଣେ ମହାମାନ୍ୟ ବ୍ୟକ୍ତିଙ୍କ ପାଖେ ପାଖେ ରହିବାକୁ ସୁବିଧା ପାଇ ମଧ୍ୟ, ଆଜଯାଏ ପରିଚିତ ହୋଇପାରି ନାହିଁ ।"

ଏହି ଜଗତକୁ ଆସି କୋଡ଼ିଏଟି କ୍ୟାଲେଣ୍ଡରର ପତ୍ର ସମୂହର ବିପୁଳ ସମାବେଶକୁ ଅଙ୍ଗେ ଅଙ୍ଗେ ଉପଭୋଗ କରି ନେଲିଣି—କିନ୍ତୁ କେବେ ଏଇମିତି ଜଣେ ଅଦ୍ଭୁତ ତରୁଣୀ ଠାରୁ ଏପରି ପଦେ କଥା ଶୁଣିବାକୁ ପାଇ ନଥିଲି ।

ହଠାତ୍ ସେ ପ୍ରାୟ ଟାଣିନେଇ କାର୍‌ର ଫ୍ରଣ୍ଟ ସିଟ୍‌ରେ ମୋତେ ବସାଇ ଦେଲେ । ପଚାରିଲେ—"ଆଜି ଦୁଇ ଘଣ୍ଟା ପାଇଁ ମୋ ସଙ୍ଗେ ବୁଲିଯାଇ ପାରିବେ ?"

ଖାଲି ଗୋଟାଏ କେମିତି ସମ୍ମତି ଜଣାଇଲି ମାତ୍ର ।

× × × ×

— ସୁଦୂର ନୀଳ ଶୈଳମାଳାର ଖୋଲ ଭିତରଟା ସଜ୍ଜିତ ମେହେଦୀର ଘର ପ୍ରଭାମୟ !

ଏ ନାରୀର ଆଳାପ ଓ ମୋର ଭାବନା ମଧ୍ୟରେ ମଧ୍ୟ ବ୍ୟବଧାନ ଏତିକ ।

ଏ ଭିତରେ ଘଡ଼ିର ଗ୍ରେଟ କଣ୍ଟାଟି '୩' ପାଖୁ ଉଠି '୫'ରେ ପହଞ୍ଚି ଗଲାଣି । ମୋଟିରେ ଘଡ଼ି ନ ଥାଏ, କେବଳ ସେ ସ୍ଥୀର ହାତରେ—

"........ପଲ୍ଲୀ—କୋଣରେ ପ୍ରକୃତିର ବିପୁଳ ସମ୍ପଦ, ତା ଉପରେ ଏଇ ବସନ୍ତର ନବୀନ ସମ୍ଭାର—ଠିକ୍ ବେଲ ବୁଢ଼ୀର କାରିଗରୀ ଦର୍ଶନୀୟ ! ଆଉ କପୋଳ ରୁଚ୍ୟ ହୋଇ ଉଠୁଥିବ ଅନିଳ ବାବୁ ! ଧନ୍ୟ ଆପଣମାନଙ୍କର ଉଲ୍ଲାସମୟ ଜୀବନ ! ପ୍ରାକୃତିକ ନିରନ୍ତିଶୟ ରୂପର ଚନ୍ଦ୍ରାତପ ତଳେ ମେଲି ଦେଇଛ ତୁମେ ତୁମର କବି ଜୀବନର ଅସରନ୍ତି ଭାବଧାରା—"

"ଓଃ କି ମନୋହର ହୋଇ ନଥିବ ପଲ୍ଲୀର ପ୍ରଭାତ ! ନଈ କୂଳର କୋମଳ ଓ ନୀଳ ଦୁର୍ବାଦଳ-ଚେଳ ପରିଧାୟୀ ଧରା ! ସକାଳଆ ମୃଦୁ ମଳୟର ସାଦର ସ୍ପର୍ଶରେ କପର ଆନ୍ଦୋଳିତ ଓ କୁଞ୍ଚିତ ହେଉ ନଥିବ ତାହା ? ପୁଣି ସେତେବେଳେ ବିଶ୍ୱ ଶିଳ୍ପୀ ପ୍ରଭାକର ନିଜ ତୂଳିରେ ଅପୂର୍ବ ଢଙ୍ଗ ଢାଳି ରଙ୍ଗାଯିତ କରି ଦେଇଥିବ ତାକୁ ବିଭିନ୍ନ ରଙ୍ଗରେ ! ଆଃ କି ଉପଭୋଗ୍ୟ !!"

ତାର ଏପରି କବିତ୍ୱମୟ ଢଙ୍ଗ ଢାଙ୍ଗ ଦେଖି ମୁଁ ଟିକିଏ ଥମକି ଯାଇ କହିଲି—"ହଁ, ବିଶେଷତଃରେ ସେହି ଅନୁପମ ସୌନ୍ଦର୍ଯ୍ୟର ଯଥୋଚିତ ପୂଜା କରିବା ପାଇଁ, ଆପଣଙ୍କୁ ମୋର ଏ ନିମନ୍ତ୍ରଣ !

ଦେଖୁଛି, ପଲ୍ଲୀର ଆଭ୍ୟନ୍ତରୀଣ ପ୍ରଦେଶ ପର୍ଯ୍ୟବେକ୍ଷଣ କରି ଦେଖିବା ପାଇଁ, ଅନ୍ତତଃ ମାସେ ରହିବାକୁ ପଡ଼ିବ ଆପଣଙ୍କୁ ସେଠି।"

ମୋ କଥାରୁ ସେ କଣ ବୁଝିଲା କେଜାଣି । ସେ ବଡ଼ ଆକୁଳିତ କଣ୍ଠରେ ପଚାରିଲା—"ଆପଣଙ୍କ ଘରେ ଆଉ କିଏ ଅଛି ?" ମୁଁ କହିଲି— "ବାପା, ମା, ଭାଇ ଓ ଭଉଣୀ ।"

× × × ×

ତା ଆରଦିନ ସକାଳ । ସେ, ମୁଁ ଆଉ ଜଣେ ଗୃହର ପକ୍କା ସାତ ମାଇଲ ବାଟ ପାଦରେ ଚାଲି ଆସିଲୁ । ବର୍ତ୍ତମାନ ଦେଖିଲି, ହଠାତ୍ ସେ ତରୁଣୀ ପାଇଁ କିଛି ଖାଇବାର ବନ୍ଦୋବସ୍ତ ନ କଲେ ନ ହେବ ! ଜଙ୍ଘରୁ ମାଂସପେଶୀଗୁଡ଼ାମାନ ଫକ୍ ଫକ୍ ଡେଇଁ ଲାଗିଛି ତାଙ୍କର । ପଲ୍ଲୀର ଗୃହର ଠା କିଛି ଗୁଣର । ସେ ଚାପା ଚିପି କରି ଗୋଡ଼ର ଦରଜ ଉଣା ଅଧିକେ ଲାଘବ କରାଇ ନେଲା ।

ଆର ଦିନ ବୁଲି ବାହାରିଛୁ । ସେ ହଠାତ୍ ଠିଆ ହୋଇପଡ଼ି କହିଲେ—'ସ୍ତ୍ରୀଙ୍କୁ କଣ ହୋଇଛି ?'

'ମାଲେରିଆ ! ପୁଣି ପ୍ରସୂତି ରୋଗୀ—' ମୁଁ ଗମ୍ଭୀର ହୋଇ କହିଲି ।

'ତେବେ ସେ ପିଲାଟି ତାର ? କେତେ ଦିନ ହେବ ?'

'ସପ୍ତାହକ ଭିତରେ.........'

'ଓଃ ଗଡ୍; ଏଠି ତେବେ ଏ କୋହଲ, କାକରରେ କଣ କରୁଛି ?' ସେ ଚମକି ପଡ଼ି କହିଲେ । ପୂର୍ବ ପରି ଗମ୍ଭୀର ହୋଇ ଉତ୍ତର ଦେଲି, 'ଭାଗ୍ୟକୁଣ୍ଡା ଶାଗ — ।'

ଏଥରକ ସେ ଅପ୍ରତିଭ ହୋଇପଡ଼ି କହିଲେ— 'ତେବେ, ତା ଘଟର କେହି ନଥିବ । ବୋଧହୁଏ ଡାକ୍ତରଠୁଁ ଗରମ୍ ମେଡ଼ିସିନ୍ ମାଗି ଖାଇଥିବ ମଧ୍ୟ । ତଥାପି ଆଶ୍ଚର୍ଯ୍ୟ ଏହି ଯେ—ପ୍ରକୃତିର ପରିଧେୟ ଭିତରେ ଛିଣ୍ଡା କନା—ସାତ ଦିନର ପିଲାକୁ ବୁଜୁଳା ବାନ୍ଧିଛି ପିଠି ଉପରେ ।'

'ନା ନା, ପଲ୍ଲୀର ପ୍ରକୃତିର ଶରୀରଗତ ପନ୍ଥା ଏ । ଆପଣ ନୂଆ, ଆପଣ କିନ୍ତୁ ନୂଆ ଦେଖୁଛନ୍ତି ଏବେ । ତାକୁ ପଚାରନ୍ତୁ, ସେ କିଛି ଔଷଧ ଖାଇ ନାହିଁ । ପାଇବ ବା କୁଆଡ଼ୁ ? ଯଦିବା ଏ କର୍ମମୟ ଜୀବନରୁ ଟିକିଏ ଫୁରୁସତ୍ ପାଏ, ତେବେ ନିଆଁ ଟିକିଏ ଜାଳି ବସିବ ।'

'ପ୍ରକୃତ ··· ଅମଳ ବାବୁ!' ସେ ସ୍ତମ୍ଭିତ ହୋଇ କହିଲେ ।

'ନୁହେଁ ତ ଆଉ କଣ ?'

'ଏଠି ଡାକ୍ତର ନାହାନ୍ତି ତେବେ ?'

'ପ୍ରାୟ ପ୍ରତ୍ୟେକ ପଲ୍ଲୀରେ ' ଏଥିରେ ସେ ବଡ଼ ବ୍ୟତିବ୍ୟସ୍ତ ହୋଇ କହିଲେ— 'କବିରାଜ······ ?' 'କୋରାପୁଟର ପଲ୍ଲୀ ସେମାନଙ୍କ ଚକ୍ଷୁ ତାରକାର ପଛ ପଟରେ—' ମୁଁ କହିଲି ।

ଏଥର ସେ ଖୁବ୍ ରାଗିଯାଇ କହିଲେ — 'ତେବେ ଜଗତ୍ କଣ ସ୍ୱାର୍ଥର ତପ୍ତ ଅନଳ କୁଣ୍ଡ ମଧ୍ୟକୁ, ଏପରି ଦୃପ୍ତ ହସ୍ତରେ ନିଜେ ନିଜର ଜୀବନକୁ ଟାଣି ନେବାରେ ବ୍ୟସ୍ତ ।'

'ନିଶ୍ଚୟ!' ବଡ଼ ପାଟିରେ କହିଲି ମୁଁ ।

'ମିଛ କହିଲେ ଆପଣ, କାହିଁ ମୁଁ ତ ମୋର ପାଇଁ ଆସିନାହିଁ ଏଠିକି । ଆସିଛି ତୁମର ପାଇଁ । ତୁମର ଅନବଦ୍ୟ ଜୀବନର ସେବା କରିବା ପାଇଁ ।'

ଦେଖିଲି, ଏହା କହୁ କହୁ ସେ ମୋ ବକ୍ଷ ଉପରକୁ ଆଉଜି ଆସୁଛି ଯେମିତି । କହିଲି— ଭଦ୍ରେ! ଏ କଣ କରୁଛ ? କଥା ପ୍ରସଙ୍ଗରେ ନିଜେ ନିଜର ସର୍ବନାଶ କରିବାକୁ ଯାଉଛ କାହିଁକି ?'

'— ନା, ଏ ଯେ ସନ୍ଦେଶ ···' ତାର ଲୁହ ଧାରରେ ମୋର କମିଜ୍‌ଟି ଓଦା ହୋଇ ଗଲାଣି । ମୋର ଆଖିରୁ ବି ପାଣି ବହି ଆସିଲା । କହିଲି—'ମୁଁ ଯେ ବିବାହ ହୋଇ ଗୃହ ବର୍ଷେ ବିତି ଯାଉଛି ।'

'ସ୍ତ୍ରୀ......'

'ସେ ବର୍ତ୍ତମାନ ସୁଦ୍ଧା ଅପରିଣତ ବୟସ୍କା ।'

'ମେଧାବାନ୍ ଭାରତୀୟ ଯୁବକ ଆଜ ସମାନ୍ୟ ଅପରିଚିତା ବାଳିକାର ହୃଦୟହୀନ ଆସକ୍ତିରେ — ସେଇ ବାଳିକାର, ନିଜର ସଙ୍ଗେ ସଙ୍ଗେ ସଦ୍ୟ ପ୍ରସ୍ଫୁଟିତ ଯୁବତୀର ଭବିଷ୍ୟତ୍‌କୁ ଅକାଳରେ ଭସ୍ମ କରି ଦେବାକୁ ଯାଉଛି — ଘୃଣ୍ୟ ସମାଜର କ୍ରୁର ନୀତିଦ୍ୱାରା ପ୍ରତାରିତ ହୋଇ·· ···'

'ତାହାହିଁ ଯେ ଭାରତୀୟ ଜୀବନର ବିପୁଳ ଗୌରବ ଓ ମଣିଷ ପ୍ରକୃତି ଉପରେ ଅକାଟ୍ୟ ବିଜୟ ।'

( ପ୍ରାୟ ୨୦ ବର୍ଷ ତଳର ଏ ଲେଖା )

କୃଷ୍ଣଚରଣ, ଯୁବକ, ଆଧୁନିକ ଯୁଗର ଗରିବ ପିଲା । ଚକା ମୁହଁ । ପରିଚ୍ଛନ୍ନ, ପାଠ ପଢ଼ିଲା ଢଙ୍ଗ । ପରିଷ୍କାର ବେଶଭୂଷା । ସପ୍ଲିମେଣ୍ଟାରୀ ପରୀକ୍ଷାରେ ମାଟ୍ରିକ୍ ପାଶ କରିଛି ଏଇ ବର୍ଷ ।

ଏଇ ବର୍ଷ—ବାପା ତାର ଯାଇଛନ୍ତି । କୋରିଆ ଯୁଦ୍ଧ ଆରମ୍ଭ ପୂର୍ବରୁ ସଂସାରରୁ ଛୁଟି ନେଇଛନ୍ତି ସେ । ବୁଢ଼ା ଲୋକ ପୃଥିବୀର ଆଗାମୀ କନ୍ଦଳରେ କେତେ ସନ୍ତୁଳ ହୁଅନ୍ତେ ! ଘରେ କେବଳ ମାଁ, ସାନ ଭାଇ ହରିଚରଣ । ନଗଣ୍ୟ ପରିବାରଟି । ଗାଁର ଗୋଟାଏ ପରିବାରରେ କାଳ କଟାଇ ନେଉଛନ୍ତି । ଅର୍ଥାଗମର ସ୍ଥାୟୀପନ୍ଥା ନାହିଁ । କୁଟାକୁଟି କରି ଘର ଚଳାନ୍ତି କୃଷ୍ଣର ମାଁ । ପାଖରେ ଗୋଟାଏ ପୁଅ ହରି ତ । କୃଷ୍ଣ ଦୂରରେ — ସହରରେ ।

ଦୂରରେ — ସହରରେ ଗ୍ରୁପ୍ ଜୀବନ ତାର କଟିଯାଇଛି । ଗୋଟାଏ ଝୁଙ୍କରେ ବାପା ତାକୁ ପଠେଇ ଥିଲେ । ରଜାଘରୁ ମିଳୁଥିଲା ପ୍ରଚୁର ସାହାଯ୍ୟ । ଗଭର୍ଣ୍ଣମେଣ୍ଟ ବି ଦେଉଥିଲେ କିଛି । କିନ୍ତୁ ଫେଲ୍ କଲା ମାଟ୍ରିକ୍‌ରେ । ସାହାଯ୍ୟ ବନ୍ଦ ହେଲା । କୌଣସିମତେ ଆଉ ପଢ଼ିବାର ଆଶା ନାହିଁ । ଗାଁ ବାଲାଙ୍କ ସାହାଯ୍ୟରେ ବଡ଼ କଷ୍ଟରେ ସପ୍ଲିମେଣ୍ଟାରୀ ପରୀକ୍ଷାଟା ଦେଲା । କୃତକାର୍ଯ୍ୟ ବି ହୋଇଛି ।

କୃତକାର୍ଯ୍ୟ ସିନା ହେଲା ପରୀକ୍ଷାରେ । ବର୍ତ୍ତମାନ ମୁଣ୍ଡ ଉପରେ ଜୀବନର ବିରାଟ ସମସ୍ୟା । କୃଷ୍ଣର ମନେ ପଡ଼ୁଛି, ବାପା ତାକୁ କାହିଁକି ପଠାଇ ଥିଲେ ପାଠ ପଢ଼ିବା ପାଇଁ ଜୟପୁରକୁ । ଆଜି ହାତରେ ତୃତୀୟ ଶ୍ରେଣୀର ସାର୍ଟିଫିକେଟ୍ ଖଣ୍ଡି ଧରି କୃଷ୍ଣ ଭାବୁଛି ସେହି କଥା । ଗରିବ ଚନ୍ଦ୍ର ତ୍ରିପାଠୀ ପେଟ କାଟି କେଉଁ ଆଶାରେ କୃଷ୍ଣ ପାଖକୁ ପଠାଉ ଥିଲେ ଖର୍ଚ୍ଚ, ଭାବିଲେ ହିଁ ଯଥେଷ୍ଟ ଦୁଃଖ ଆସୁଚି ମନରେ । ପୁନରାବୃତ୍ତି କରିବା ଆବଶ୍ୟକ ନାହିଁ । ତେବେ ସେ ସବୁ ମଲା ଲୋକର କଥା । ଏବେ କୃଷ୍ଣ ଯାହା ଯେମିତି ହେଲେ ବି ଚନ୍ଦ୍ର ତ୍ରିପାଠୀ କ ଆଉ ଫେରି ଆସିବେ ? ପଚାରିବେ ? ନୁହେଁ । କିନ୍ତୁ ଜୀଅନ୍ତା ସ୍ମୃତି ଜାଳି ରହିଛି ମନରେ । ପ୍ରେରଣା— "ଅବୁଝା ହୁଅନା ବାପ, ମନଦେଇ ପଢ଼ । ବଡ଼ ଲୋକର ବାକ୍ସ ବାକ୍ସ ଟଙ୍କା ଅଛି । ଗାଁ ଗଣ୍ଡା ସବୁ ଅଛି, ପାଠ ନ ହେଲା ବସି ଖାଇବେ । ସେ ପିଲାଙ୍କ ସରିହେଲେ ହେବ ? ସେ ମଉଜ କରି ବୁଲିଲେ ତୁ ବୁଲିବୁ କାହିଁକି ତାଙ୍କ ସଙ୍ଗେ ? ତୁ ଜାଣୁ ସେମାନେ ଘୃଣା କରନ୍ତି ତୋତେ । ଆଦର ଯତ୍ନ କରନ୍ତି, ସବୁ ଦିନ ପାଇଁ ନୁହେଁ । କରି ପାରିବେ ନାହିଁ । ଯୁଗେ ଯୁଗେ ଗରିବର ସନ୍ତାନକୁ ଲକ୍ଷ୍ମୀ ଧର୍ମ ହୁଏ ବଡ଼ । ତୁ କାହିଁକି ଭଲ ଗୋଡ଼ାଇବୁ ତାଙ୍କ ପଛରେ ? ଭବିଷ୍ୟତକୁ ନଜର ରଖ । ପଢ଼ ମନଦେଇ ।"

ମନଦେଇ କୃଷ୍ଣ ପାଠ ପଢ଼ିଚି । ସାର୍ଟିଫିକେଟ୍ ପାଇଚି । ବାପା ନାହାନ୍ତି ଦେଖିବାକୁ । ତେବେ ତାଙ୍କର ଆଶା, ତାଙ୍କର ଇଚ୍ଛା ବରାବର ରହିଛି ସଜାଗ ହୋଇ । କୃଷ୍ଣର ମୁଣ୍ଡ ଚାରିପାଖେ ବୁଲୁଚି ଅନବରତ । ବାପାଙ୍କର ସ୍ପଷ୍ଟ ଧାରଣା, ପାଠ ପଢ଼ିଲେ ଲୋକ ପଇସା କମାଏ । ପଇସା ହେଲେ ହୁଏ ବଡ଼ । କୃଷ୍ଣ ପଇସା କମେଇବ, ବଡ଼ ହେବ ବାପର ଆଶା —

ବ'ପର ଆଶା — । ଚେଷ୍ଟା କରିବ । ଗାଁରେ ବସି ରହି ଆଉ କ ଲାଭ ? ଏଠି ତାର ସାର୍ଟିଫିକେଟର ସମ୍ମାନ ନାହିଁ । ମୁଠିଏ ଖାଇବା ବ ମୁସ୍କିଲ ହୋଇ ପଡ଼ୁଛି ଦିନୁ ଦିନ । ପାଠୁଆ ମୁଣ୍ଡକୁ ଚଳିବାର ଶକ୍ତି ଗାଁ ବାଲାଙ୍କଠି କାହିଁ ? ତେଣୁ ତାକୁ ଜୟପୁର ଯିବାକୁ ହିଁ ହେବ । କୃଷ୍ଣ ଗଲା ସହରକୁ ।

ସହର — ମାଟ୍ରିକ୍ ସାର୍ଟିଫିକେଟ୍‌ର ହାତଗଡ଼ା ଅଗଣିତ କରାମୀ ସୁଅ ନିତ ସକାଳେ ଅଫିସ କାଉଁରେ ଛୁଟିଛି । ଫାଇଲ୍ ଭିତରେ ଅସଂଖ୍ୟ ମଣିଷ ମୁଣ୍ଡର କରାମତି । ଦରମା ସତୁରୀ ଟଙ୍କା ।

ସତୁରୀ ଟଙ୍କା ପାଇଁ କୃଷ୍ଣ ଦରଖାସ୍ତ ଖଣ୍ଡିଏ ଲେଖି ବଢ଼ାଇ ଦେଲା; ସଲାମ ବଜାଇ । ଜବାବ ପାଇଲା 'ଆଗରୁ ଚେଷ୍ଟା କଲ ନାହିଁ । ସ୍ଥାନ ନାହିଁ ବର୍ତ୍ତମାନ ।' କୃଷ୍ଣ ଫେରିଲା । ଚେଷ୍ଟା ଚାଲିଚି ଆଉଠାଏଁ, ଆଉଠାଏଁ । ନା, ସବୁଠି ସେହି କରୁଣ ରାଗିଣୀ ନିରାଶାର । କୃଷ୍ଣ ଆଘାତ ପାଇଲା । ବୃଥା ଚେଷ୍ଟା ।

ଚେଷ୍ଟା ଚାଲିଚି । ସହରକୁ ଆସି ବିତିଛି ସପ୍ତାହେ । ପଢ଼ାସାଥୀ ରମେଶ ଦୟାକରି ସ୍ଥାନ ଦେଇଛି ଘରେ । ସେ ମନା କରିଦେଲେ ମହଦ୍ଭୁ ଯିବ । କ ଉପାୟ ? ରମେଶ ଦୁଃଖ ପ୍ରକାଶ କରି କହିଲା, "ଭାଇ, ଜିଲ୍ଲା ବୋର୍ଡ଼ ଅଫିସରେ ଠିକଏ ଚେଷ୍ଟା କଲୁ ନାହିଁ ? ଖୁବ୍ ସମ୍ଭବ ଯେଉଠି ସ୍ଥାନ ଖାଲିଥିବ ।" ସକାଳ ପାହୁ । ସିଧା ପ୍ରେସିଡେଣ୍ଟଙ୍କ ଠାକୁ ଯିବ । କହିଦେବ, ଆଜ୍ଞା ! ଏଇଟା ମୋର ଜୀବନର ଶେଷ ଉଦ୍ୟମ ! ଫଳ ଯାହା ହେଉ ।

ଯାହାହେଉ ସକାଳୁ ଦରଖାସ୍ତ ଖଣ୍ଡେ ଲେଖିଲା କୃଷ୍ଣ । ଗଲା ସଭାପତିଙ୍କ ଘରକୁ । ନାହାନ୍ତି, ଅଫିସକୁ ଗଲା । ସେଠି ବି ସେହି ପୁରୁଣା ଆଘାତ । ନାହାନ୍ତି, 'କେଉଁଠି ଥିବେ ?' 'କଟକ ଗଲେ' ।

ବଜ୍ର ଛିଡ଼ ପଡ଼ିଲା କୃଷ୍ଣର ମୁଣ୍ଡରେ । 'କେବେ ଫେରିବେ ଜାଣିଛନ୍ତି ?' କିରାନୀ ଜଣେ ଜବାବ ଦେଲେ 'ଖୁବ୍ ସମ୍ଭବ ସପ୍ତାହକ ପରେ ।' ହିଁ ··· କୃଷ୍ଣ ଫେରିଲା । ରମେଶ ଭେଟିଲା ବାଟରେ । 'କଣ ହେଲା ?' ସତ୍ୟପନ୍ତ ନାହାନ୍ତି ଭାଇ ! ରମେଶ ହସିଲା, ଓଲଟା କରେ ? ଏବେ ଏକ୍ଷଣି ମୁଁ ଦେଖି ଆସିଲି । 'କେଉଁଠି ?' 'ତାଙ୍କର ଘର ପାଖରେ ।' ଅଣନିଶ୍ୱାସୀ ହୋଇ କୃଷ୍ଣ ଧାଇଁଲା ।

ଧାଇଁଚି କୃଷ୍ଣ । ରମେଶ ଚାହିଁ ରହିଲା ପଛରୁ । ଓଃ ଲୋକଟା ପାଗଳ ହୋଇ ଯାଇଛି । ତା ଦୁଃଖ କଣ ଈଶ୍ୱର ଶୁଣିବେ ନାହିଁ ?

ଈଶ୍ୱର ଶୁଣିଲେ ତା ଦୁଃଖ । କରୁଣ-ନମ୍ର-ନମସ୍କାରଟିଏ କରି ଛିଡ଼ାହେଲା କୃଷ୍ଣ । 'କଣ ?' ସତ୍ୟପନ୍ତ ପଚାରିଲେ । ପ୍ରତି ନମସ୍କାର ଜଣାଇବାକୁ ସମୟ ନାହିଁ । କୃଷ୍ଣ ଦରଖାସ୍ତ ଖଣ୍ଡି ବଢ଼ାଇ ଦେଲା । ରୋଡ଼ ଉପରେ ମଟରର ଆକୁଳ ହର୍ଣ୍ଣ । ସମୟ ହୋଇ ଯାଉଛି । ଚାରି ଘଣ୍ଟା ଭିତରେ ବିଜୟନଗରରେ ପହଞ୍ଚିବାର କଥା । ନହେଲେ ଟ୍ରେନ୍ ମିଳିବ ନାହିଁ । ହାତ ହଲାଇ ସତ୍ୟପନ୍ତ କହିଲେ, 'ପଢ଼ିବାକୁ ସମୟ ନାହିଁ, କହ କଣ ଚାହିଁ ?' ଥରି ଥରି କହିଲା କୃଷ୍ଣ, 'ଆଜ୍ଞା ! ଆପଣଙ୍କର ଅଫିସରେ ଖଣ୍ଡେ ଚାକିରି । ମେଟ୍ରିକ୍ ପାଶ୍ କରିଚି । ଗରିବ ଲୋକ । ଆପଣଙ୍କର ଅନୁଗ୍ରହ ଉପରେ ତିନି ପ୍ରାଣୀଙ୍କର ଜୀବନ ନିର୍ଭର କରୁଛି ।'

'ଆଚ୍ଛା, କଟକରୁ ଫେରେ ମୁଁ । ଏଁ ··· ?'

ଏଁ ··· ମଟର ଛୁଟିଲା ଧୂଳି ଉଡ଼େଇ । କୃଷ୍ଣ ଚାହିଁ ରହିଲା ଭେଳିକା ପରି ।

ଭେଳିକା ପରି ପିଲାଟାଏ ଚାହିଁ ରହିଛି । ସୁନ୍ଦର ଚେହେରା । ମଜଭୁତ ଗଠନ । ବାବୁଙ୍କ ମଟର ଯିବା ବାଟକୁ ଅନେଇ ରହିଚି ।

ସଭାପତିଙ୍କ ଗୃହକର୍ତ୍ତୀ ମାଳତୀ ଦେଖିଲେ । କିଏ ଭାବିଲେ କେଜାଣି । ଖବର ଦେଲେ ଯାଇ ସଭାପତିଙ୍କ ସ୍ତ୍ରୀ ରୁକ୍ମଣୀ ଦେବୀଙ୍କୁ । ଓଳିଆଟା, ଭଲ ମନ୍ଦ ଜାଣେ ନାହିଁ । ସଭ୍ୟତା, ଭଦ୍ରତା ବୁଝେ ନାହିଁ । ମାନ ସମ୍ମାନ ଚିହ୍ନେ ନାହିଁ । ଗୃହକର୍ତ୍ତୀ ମୂର୍ଖ । ତା କଥାରେ ବିଶ୍ୱାସ କରି ରୁକ୍ମଣୀ ଦେବୀ ଧାଇଁ ଆସିଲେ । କିଏ ବନ୍ଧୁ ବାନ୍ଧବ ହୋଇଥିବେ ପରା । ଆସୁ ଆସୁ ବାବୁ ଗୃହଛିବା ଦେଖି ଠିଆ ହୋଇଥିବେ ବାହାରେ । ଗୃହଛିବେ କ କିଏ ଭାବୁଥିବେ ତେଣୁ ।

ତେଣୁ ରୁକ୍ମଣୀ ଦେବୀ ଆସିଲେ ପଦାକୁ । ଓଃ ସତେତ ସୁନ୍ଦର ଟହ ଟହ ତରୁଣ । କଞ୍ଚା ବାଉଁଶ ପରି ସ୍ନିଗ୍ଧ ଗଠନ । ତେବେ କିଏ ସେ ? ପଚାରି ବୁଝିବା । ପିଲାଟା ତ ।

ବୁଝିବା ଉଦ୍ଦେଶ୍ୟରେ କୃଷ୍ଣଙ୍କୁ ଡକାଇଲେ ଘରକୁ । ବାବୁଆଣୀ ଡାକୁଛନ୍ତି । କୃଷ୍ଣ ଚକିତ ହେଲା ।

ମାଇପି ଲୋକର ଗପ । କୃଷ୍ଣ ବ୍ୟସ୍ତ ହୋଇ ପଡ଼ିଲାଣି, ଘର କେଉଁଠି ? କ ଜାତି—ବାପା, ମାଁ କିଏ, କେଉଁଠିକାର ? କ ବଂଶ ? କୁଆଡ଼େ ଆସିଥିଲେ ? ଯେତେ ଜବାବ ଦେଲେ ରୁକ୍ମଣୀ ସନ୍ତୁଷ୍ଟ ନୁହନ୍ତି । କାରଣ ପ୍ରଶ୍ନ ଭିତରେ ଧୀରେ ଧୀରେ ଗୋଟାଏ ଛୁଣ୍ଡି ଯାଇଥିବା ଗୁପ୍ତ କଥାର ସନ୍ଧାନ ମିଳୁଛି, ତାଙ୍କ ହଜି ଯାଇଥିବା ବଂଶର, ପରମ୍ପରାର ସନ୍ଧାନ । କୃଷ୍ଣର ବାପା ଗଞ୍ଜାମ ଜିଲ୍ଲାର ବନମାଳୀପୁର ଶାସନ ନିବାସୀ ଜଗନ୍ନାଥ ମିଶ୍ରଙ୍କ ନାତି । ଲେଖାରେ ଜଗନ୍ନାଥ ହେବେ ରୁକ୍ମଣୀଙ୍କ ବଡ଼ ବାପା । କୃଷ୍ଣ ଆମଣାର ଲୋକ । ଦୂର ସମ୍ପର୍କ । ତଥାପି ନିଜ ବାପ ଘରର ବଂଶ ।

ବାପ ଘର ବଂଶ ଶେଷ ପାଇଯାଇଛି କୁ ହନୁ । ବଂଶର ପରମ୍ପରାକୁ ରକ୍ଷା କରିବା ପାଇଁ ଏଡ଼େ ଦୂର ଜଙ୍ଗଲ ରାଇଜରେ

ଜଣେମାତ୍ର କୃଷ୍ଣଚରଣ । ସମ୍ପର୍କଗତ ଆକର୍ଷଣ ଗୋଟାଏ ଦୈବଶକ୍ତି ଭଳି ସବୁ ପ୍ରକାର ଭୟଙ୍କର ଦୂରତାକୁ ଛିନ୍ନ କରି ଏପରି ମିଳନ ଘଟାଇବା ସଂସାରରେ ନୂଆ ନୁହେଁ । ରୁକ୍ମଣୀ ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ଏକା କୃଷ୍ଣ ଓ ତାର ଗୋଟିଏ ଭାଇଟି । ଆଉ ନାହିଁ । ଆଉ ନାହିଁ । କେଡ଼େ ବଡ଼ ବଂଶ । ସାଧୁ ମିଶ୍ର କହିଲେ ବନମାଳୀପୁର ଶାସନ ଚମକି ପଡ଼ୁଥିଲା । ତାଙ୍କର ବଡ଼ ବାପା ! କାହିଁ ଆଜି ସେମାନେ ? କିଏ କୁଆଡ଼େ କୂଳ କିନାରା ନ ପାଇ ଯେ ଯୁଆଡ଼େ ଭାସିଗଲେ । ବଂଶ ବୁଡ଼ିଲା । ଖାଲି କୋରାପୁଟର ମୁଣ୍ଡିଗୁଡ଼ା ଗାଁରେ ଚନ୍ଦ୍ର ମିଶ୍ରେ । ସେ ବି ମଲେ । ବର୍ତ୍ତମାନ ସେହି ବଂଶର ଶେଷ ଚିହ୍ନ କୃଷ୍ଣଚରଣ । ରୁକ୍ମଣୀଙ୍କ ପ୍ରାଣରେ ଆଜି ପରମ ପରିତୃପ୍ତି ! 'କୃଷ୍ଣ ତୁ ମୋର ବାପ ବଂଶର ରକ୍ଷାକର୍ତ୍ତା ଜାଣିପାରି ଖୁସି ହେଲି । ତୋର ଠିକଣା ଏଇଠା । ଯା କାଲି ଲୋକ ପଠାଇବି । ମାଁ ଓ ଭାଇଙ୍କୁ ନେଇ ଆସିବୁ । ସେ ମୋର । କାହିଁକି ସେଠି ଅସୁବିଧାରେ ପଡ଼ିଥିବେ । ମନେରଖ, ତୁ ମୋ ଘରର ପିଲା । ଏଠି ଖାଇବୁ, ପିଇବୁ ।' କୃଷ୍ଣ ବିସ୍ମୟ ଓ ଆନନ୍ଦରେ ନିଶ୍ୱାସ ମାରିଲା । ମୁଣ୍ଡିଆ ମାରିଲା ରୁକ୍ମଣୀ ଦେବୀଙ୍କ ଚରଣ ତଳେ ।

କୃଷ୍ଣ ବାହୁଡ଼ିଲା ଘରକୁ ।

ସକାଳ ପରେ ସନ୍ଧ୍ୟା । ସେମିତି ଅନେକ ସନ୍ଧ୍ୟା ବିତିଛି । ଆଠ ଦିନ ହେବ କୃଷ୍ଣ ସପରିବାରେ ରହୁଛି ରୁକ୍ମଣୀ ଦେବୀଙ୍କ ପାଖରେ । କଟକରୁ ବାହୁଡ଼ିଲେ ଜିଲ୍ଲା ବୋର୍ଡ ସଭାପତି ଲମ୍ବୋଦର ବାବୁ । ସ୍ତ୍ରୀ କହିଲେ, ଦେଖ ! ତମେ କହୁଥିଲ ଦୁନିଆରେ ମୋ ବାପ ବଂଶର ଆଉ କେହି ନାହାନ୍ତି ପରା ? ଦେଖିବ, କିଏ ଅଛି ମୋର ! ଲମ୍ବୋଦର ବାବୁ ଥଟ୍ଟା କରି କହିଲେ, 'ଅଛି, ଆମ ଅଫିସ ଚପରାସୀ ଟଙ୍କୁଡ଼ୁ ଭୂମିଆ !'

'ହୁଁ, କୃଷ୍ଣ, ଆଇବୁଟିରେ ବାପ! ପ୍ରଣାମ କର, ଏଇ ତୋର ଅଜା।' ନମସ୍କାର କରି ଛିଡ଼ା ହେଲା କୃଷ୍ଣ । ନଚେଖି ଦେଖିଲେ ଲମ୍ବୋଦର ବାବୁ । କୃଷ୍ଣ ଚରଣ ଜାବା ହୋଇ ଛିଡ଼ା ହେଲା । ଜଳଖିଆ ସଜାଡ଼ୁ ସଜାଡ଼ୁ ରୁକ୍ମଣୀ ଆରମ୍ଭ କଲେ ବାପ ବଂଶର ଇତିହାସ।

ଇତିହାସ ଶୁଣି ଲମ୍ବୋଦର ବାବୁ ଖୁସି ହେଲେ । କହିଲେ 'ବସ ବାବୁ ।' ଲମ୍ବୋଦର ବାବୁଙ୍କ ୧୫ ବର୍ଷର ଝିଅ ସ୍ନେହ ଡାକିଲା 'କୃଷ୍ଣ ଭାଇ ସିନେମା ଯିବା ପରା? ବାପାଙ୍କ ମଟର ଆସିଲା। ଆସ ଜଲ୍‌ଦି ।' କୃଷ୍ଣ ଚାହିଁଲା ଅଜାଙ୍କ ମୁହଁକୁ । ଅଜା କହିଲେ 'ଯାଅ, ସ୍ନେହ ଡାକୁଛି ।

ସ୍ନେହ ଡାକୁଛି । ପନ୍ଦର ବର୍ଷର । ଚମ୍ପା ରାଜ୍ୟର ମେନକା। ସୁନ୍ଦର । ସିନେମା ଯିବା ଉଦ୍ଦେଶ୍ୟରେ ମଟରରେ ବସିଲେ ଦୁହେଁ ।

ଦଣ୍ଡକାରଣ୍ୟ ଯୋଜନାର ଏକ ମୁଖ୍ୟ କର୍ମକ୍ଷେତ୍ର । ଆଜି ମେଘର ପେଟଟା ଫାଟି ଯାଇଛି ନା କଣ କେଜାଣି, କ୍ରମାଗତ ରହି ରହି ପାଣି ଅଜାଡ଼ି ହେଉଛି ।

ଗ୍ରେଟିଆ ଟେଣ୍ଟଟା ଭିତରେ ଦୁ ବନ୍ଧୁ କମ୍ବଳ ଘୋଡ଼ାଇ ହୋଇ ଶୋଇଛନ୍ତି । ମୁହଁରେ କଥା ନାହିଁ, ଭାବନାର ବିଶ୍ରାମ ନାହିଁ । ଆଖିରେ ନିଦ ନାହିଁ ।

ବାହାରେ ଶୁଖିଲା ପତ୍ର ଉପରେ ପାଣି କୁଢ଼େଇ ହୋଇ ଝାଇଁ ଝାଇଁ ଶୁଭୁଛି । ନଶାଙ୍କର ସିଗାରେଟ୍ ଖଣ୍ଡିଏ ମୁହଁରେ ଦେଇ, ନିଆଁ ଧରାଉ ଧରାଉ ପଚାରିଲା, ନଗେନ୍, ଗୋଟିଏ କଥା ପଚାରିବି ? ସତ କହିବୁ ?

ନଗେନ୍ କର ଲେଉଟାଇଲା । ହାଇ ମାରୁ ମାରୁ କହିଲା, ଜୀବନରେ ଆଉ କେଉଁ କଥାକୁ ମାୟା, ମମତା ଅଛି ଯେ ଲୋଭ କରିବ, କରିବ ? କଣ ପଚାରିବୁ ପଚାରୁନୁ, ସତ କହିବ । ମିଛ କହିବାର ଆବଶ୍ୟକତା ଆଦୌ ନାହିଁ ।

ତୁ ଏବେ ଶୋଇ ଶୋଇ କଣ ଭାବୁଚୁ, କହିଲୁ ?

ନିଦକ ମନରେ ନଗେନ୍ କହିଲା, କହିବ ? ସତ କହିବ ? ଶୁଣିବା ପାଇଁ ତୋର ଧୈର୍ଯ୍ୟ ଅଛି ?

ଅଛି । କହ, ମୁଁ ମଧ୍ୟ କହିବ ଯେ ।

ଶୁଣ୍ ତା ହେଲେ । ନଗେନ୍ ସିଗାରେଟ୍‌ଟିଏ ମୁହଁରେ ଦେଇ ଦେଇ ଆରମ୍ଭ କଲା—

ମୁଁ କଣ ଭାବୁଥିଲି ଜାଣୁ ? ଭାବୁଥିଲି ଏଥି ଭିଙ୍ ଭିଙ୍ ବର୍ଷାରେ ଭିଜି ଭିଜି ଡାକ ପିଅନ ଆସନ୍ତା । ବଢ଼ାଇ ଦିଅନ୍ତା ଟେଲିଗ୍ରାମ— ପତ୍ନୀଙ୍କର ମୃତ୍ୟୁ ହୋଇଛି ।

ନିଶାକର ଆଶ୍ଚର୍ଯ୍ୟ ହେଲା । କହିଲା, କଣ ତୁ ବକୁଛୁ ନଗେନ୍, ଅମଙ୍ଗଳ କଥା ତୁଣ୍ଡରେ ଧରନ୍ତି ନାହିଁ ।

ନ ହେଲେ ଭାରି ତ ମଙ୍ଗଳ ହୋଇ ଯାଉଛି । ତୁ ବୁଝି ପାରିବୁନି ନିଶାକର । ସେ ବଞ୍ଚିଥିଲେ କି କଷ୍ଟ ଭୋଗିବାକୁ ପଡ଼ୁଛି ।

୨୧ ବର୍ଷ ବୟସରେ କେବେ ସେ ବାହାଘର ହୋଇଥିଲା, ମନେ ନାହିଁ । ଦଶ ବର୍ଷ ଭିତରେ ମୋଟ ୯ଟି ସନ୍ତାନର ଜନନୀ ହୋଇପଡ଼ି ସେ ଯେ ମୋତେ କି ଅସୁବିଧାରେ ପକେଇଛି, ତୁ କାଲି ବାହା ହୋଇ କେମିତି ବୁଝିବୁ ?

ନିଶାକର ସମ୍ଭାଳି ପାରିଲା ନାହିଁ । କହିଲା, ଯାହା ବୁଝିଲୁ ଖମ୍ବିଅଛି । ହଇବେ, ତୁ ଅସୁବିଧାରେ ପଡ଼ିଲୁ ନା ସେ ।

ସେ ମାଁ । ନୂଆ ପିଲାଙ୍କ ଗୁହ କନା, ମୁତ କନା ନେଇ ସେ ବିହ୍ୱଳିତା, ତା ଅଖିକୁ ସଂସାରର ଆଉ କିଛି କଥା ଦିଶୁନି । ସେ ବେଶ୍ ଖୁସି । କିନ୍ତୁ ମୁଁ —

ତୁ କଣ ପିଲା ଝିଅଙ୍କୁ ନେଇ ଖୁସି ନହୁଁ ?

ଦେଖୁଚୁ ତ । ଦଣ୍ଡକାରଣ୍ୟର ଏ ରୌଦ୍ର ରାକ୍ଷସ 'ବୁଲ ଡ଼ଜର' ସାଙ୍ଗରେ ଯୁଦ୍ଧ କରି କରି ଆୟୁଷ କ୍ଷୟ ହେଉଛି । ସଂସାର ସୁଖ କଣ, ପାଶୋର ହୋଇ ଗଲଣି । ସତେ ଯେମିତି 'ପରିଶ୍ରମ' ଆଉ 'ବିଶ୍ରାମ' ଛଡ଼ା ଏ ସଂସାରରେ ଆମର ଆଉ କିଛି କରିବାର ନାହିଁ ।

ସତ କହୁଛି, ନିଶାକର । ସେ ମରିଯାଇଛି—ଟେଲିଗ୍ରାମ୍ ପଢ଼ି ଆସିଲି ନା, ଦେଖିନୁ ତୁ— ଏ ବର୍ଷାଦିନରେ ଭିଜି ଭିଜି କେମିତି ଆନନ୍ଦରେ ନାଚନ୍ତି ମୁଁ । ଖୁସିରେ ଚୋଟେ ଭଙ୍ଗ ନେଇ କାଦରେ ଗଡ଼େଇ ଦିଅନ୍ତି । ଚୋ ଉପରେ ଲେଟି ପଡ଼ନ୍ତି ।

କି ଆଶ୍ଚର୍ଯ୍ୟ କଥା ତୁ କହୁଚୁ ନଗେନ୍! କି ଅମାନୁଷିକ କଥା ।

ଅମାନୁଷିକତା କଣ, ତୁ ଜାଣିଲୁଣି କି ? ପିଲା ଛୁଆଙ୍କ ପଢ଼ାପଢ଼ି, ତାଙ୍କର ଲାଳନ ପାଳନ, ଘରଦ୍ୱାର ଅସୁବିଧା ଦେଇ ମୁଁ ଏଠାକୁ ଦି ବରଷ ହେଲା ସେମାନଙ୍କୁ ଆଣିପାରୁ ନାହିଁ । ନିକଟରେ ଆଣିପାରିବାର ସମ୍ଭାବନା ମଧ୍ୟ ନାହିଁ । ଥରେ ଛୁଟି ନେଇ ଘରକୁ ଗଲେ ଛ ମାସର ବଳକା ଆୟୁ ଖତମ୍ । ଆଉ କଣ କରିବି କହିଲୁ ? ମୁଁ କଣ ମଣିଷ ନୁହେଁ ? ମୋ ବେଳକୁ କଣ ମାନବିକତାର ନଜର ବାଙ୍କ ହୋଇ ଯାଉଛି ?

ଶୁଣିଲୁ, ଶୀଘ୍ର ମୁଁ ତାର ଦଶା ବାର ଇତ୍ୟାଦି ପ୍ରେତକ୍ରିୟା ଶେଷ କରିଦେଇ ଖିଅର ହୋଇ ପଡ଼ନ୍ତି । ଏ ଦାଢ଼ିଗୁଡ଼ା ଖଣ୍ଡ-ଦେଲେ ମୁଁ କେତେ ସୁନ୍ଦର ଦେଖା ଯାଆନ୍ତି ଯେ ?

ପିଲାମାନଙ୍କର ଚିନ୍ତା ତ ମୋତେ ଲାଗନ୍ତା ନାହିଁ, କାରଣ ତାଙ୍କର ଅଜା ଆଈ ତାଙ୍କୁ ସମ୍ଭାଳି ନିଅନ୍ତେ ।

ନଗେନ୍ ଟିକିଏ ତୁନି ହୋଇ ସିଗ୍ରେଟ୍ ଟାଣିଲା । ନିଶାକର ପଚାରିଲା ତୁ ଆଜି କଣ କରନ୍ତୁ ?

ମୁଁ ଚନ୍ଦ୍ରଭାନୁ ହୁଅନ୍ତି । ସ୍ୱପ୍ନ ଦେଖନ୍ତି । ଚିଠାଉ ଲେଖନ୍ତି । ଲାବାଣ୍ୟବତୀ ମୋ ପ୍ରତୀକ୍ଷାରେ କେତେ ରାତି, କେତେ ଦିନ କଟାଇ ଦିଅନ୍ତି ।

ଯାଃ ସୃଷ୍ଟି ଛଡ଼ା ଭାବନା ଏହା । ନିଶାକର ମୁହଁ ମୋଡ଼ିଲା । ପୁଣି କହିଲା, ପ୍ରିୟାଙ୍କୁ ଲାବାଣ୍ୟବତୀ ମଣି ସ୍ୱପ୍ନ ଦେଖୁନୁ, ଚିଠାଉ ଲେଖୁନୁ ?

ହଉନ । ଲାବାଣ୍ୟବତୀର ରୂପ ଲାବାଣ୍ୟର କଳ୍ପନା କଲି ବେଳକୁ, ଏହାର ରୁଗ୍ଣ ମୁହଁର କୁଞ୍ଚ କୁଞ୍ଚ ଚମଡ଼ାର ଧାର, ଛୋଟ ଛୋଟ ଆଖି, ଆଲୁରୁ ବାଲୁରୁ ବାଳ ଆଖିରେ ନାଚି ଯାଉଛି । ମନ ଫିକା ପଡ଼ି ଯାଉଛି । ସେ ବଞ୍ଚିଥିଲା ଯାଏ ଭାଇ, ଲାବାଣ୍ୟବତୀର କଳ୍ପନା ମନ ଭିତରକୁ ଆଣି ହେବନି, ହେଉନି ତ ।

ତା ହେଲେ ତୁ କଣ କହିବାକୁ ଚାହୁଁ ଯେ, ଯେଉଁ ଯୁବକମାନେ ଦଣ୍ଡକାରଣ୍ୟରେ ପ୍ରବାସୀ ହୋଇ ଏକୁଟିଆ ଚାକିରି କରି ରହିଛନ୍ତି, ସମସ୍ତଙ୍କର ପ୍ରିୟା ମରୁଡ଼ି ହୋଇଯିବା ଉଚିତ । ସ୍ତ୍ରୀମାନେ ମରିଗଲେ, ସେମାନେ ଏଠି ନୂଆ ପ୍ରେୟସୀ ଧରି ସୁଖରେ ରହନ୍ତେ ।

ଚୁ, ଚୁ କରି ନଗେନ୍ କହିଲା, ସମସ୍ତଙ୍କୁ କାହିଁକି କହୁଛରେ ବୋକା, ମୋ ନିଜ କଥା ମୁଁ କହୁଛି ।

ତୁ ସେ କମ୍ପାଉଣ୍ଡରର ଝିଅ ମେନକାକୁ ଦେଖିଚୁ ନା ?

ଏଥର ନିଶାକର ଖାଇ ଦର୍ପରେ ଶେଜରେ ବସି ପଡ଼ିଲା । କହିଲା, ଶେଷରେ ତୁ କି ତା ରୂପର ଶୀକାର ହୋଇଚୁ ?

କି ମୁଁ କଣ ମଣିଷ ନୁହେଁ ? ଗୁଡ୍ । ଶୁଣ୍ କହୁଛି, ଭାରି ମଜା କଥା । ତାକୁ ତ ଉପଯୁକ୍ତ ପାତ୍ର ଅଭାବରୁ ବିବାହ ଦେଇ ନ ପାରି ମା ବାପା ଭାରି ବ୍ୟସ୍ତ । ମୋର ତ ପିଲା ପିଲି ଥିବା କଥା ସେମାନେ ଜାଣନ୍ତି ନାହିଁ । ତେଣୁ ଚାରି, ପାଞ୍ଚ ମାସ ହେଲା, ଭାରି ଆଦର

କରୁଛନ୍ତି । ମେନକାର ରହି ରହି କଟାକ୍ଷ ହାଣିବାରେ ହେଳା କରୁନ । ହେଲେ କହ ଭାଇ, କରିବ କଣ ?

ପତ୍ନୀ ଥାଉ ଥାଉ ବାହା ତ ହୋଇପାରୁ ନାହିଁ । ମେନକାର ବାପ ମାଙ୍କୁ ମଧ୍ୟ ନାହିଁ କରିପାରୁ ନାହିଁ । ଯାଉଛୁ, ଆଉଛୁ । ପିଠା ପଣା ଖାଉଛୁ । ରୂପ ସୁଧା ପିଉଛୁ ଆଉ ଭାବୁଛୁ, ନାନା ଦେଶରେ ତ କେତେ କେତେ ବଡ଼ି ମରୁଡ଼ି ହେଉଛି, ମୋ ପ୍ରିୟାଟା ତାର କବଳରେ ପଡ଼ିପାରୁନ କାହିଁକି ? ମୋତେ ଖାଲି ହନ୍ତସନ୍ତ କରି ମାରୁଛି । ମୋର କରୁଣ ମନର ଉତ୍ତପ୍ତ ନିଶ୍ୱାସରେ ତାର ଜୀବନ ଦୀପ ଲିଭିପାଉ ନାହିଁ କେମିତି, ମୁଁ ଆଜ ଆଶ୍ଚର୍ଯ୍ୟ ହୋଇ ପଡ଼ୁଛି ।

ନିଶାକର ପାଟିରେ ହାତ ଦେଲା । କହିଲା, କି ପାପ କଥା ତୁ ଭାବୁଛୁ, ଜାଣିପାରୁଛୁ ନଗେନ୍? ଏ ଅଘୋର କଥା । ତୁ ନର୍କରେ ପଡ଼ିବୁ । ତୋର ପତ୍ନୀ ସେ । ଜଣେ ମାତ୍ର ମଣିଷ ସିଏ ଏ ପୃଥିବୀରେ, ସିଏ କି କେବଳ ତୋର ସର୍ବ ମଙ୍ଗଳ କାମନା କରନ୍ତି । ସେ ତୋର ସହଧର୍ମିଣୀ ! ତୁ ତାଙ୍କର ଅମଙ୍ଗଳ ଚିନ୍ତା କରୁଚୁ ?

ମୁଁ କାହାର ଅମଙ୍ଗଳ ପାଏଁ ନାହିଁ ନିଶାକର, ମୁ କାହାର ସର୍ବନାଶ ଚାହେଁ ନାହିଁ । ମୁଁ ଚାହେଁ ମୋର ମଙ୍ଗଳ, ମୋର ଜୀବନର ଯଥାର୍ଥ ବିକାଶ; ମୋ ଚିନ୍ତାର, ଭାବନାର, ପ୍ରବୃତ୍ତିଗୁଡ଼ିକର ସଙ୍ଗତ ବିକାଶ ମୁଁ ଚାହେଁ । ମୁଁ ଆଦର୍ଶ ଚାହେଁ ନାହିଁ, ଚାହେଁ ବାସ୍ତବ ସତ୍ୟ ପ୍ରତିଷ୍ଠା ।

ତୁ ଆଜ ବେଶି ଭାବନା କରୁଛୁ । ଯେତେ ଶୀଘ୍ର ପାରୁ ଶୁଇବା ଛାଡ଼ି ଚାଲଯା । ନିଶାକର ପୁଣି ଘୋଡ଼ାଇ ହୋଇ ଶୋଇ ପଡ଼ିଲା ।

କଲେଜ ପଢ଼ା ଦିନୁ ପ୍ରତିରକ୍ଷା ବିଭାଗର ଆକାଶ ବାହିନୀ ସୈନିକ ଥିଲା ପର୍ଯ୍ୟନ୍ତ ବିଜୟଚନ୍ଦ୍ର ମହାପାତ୍ର କେତେ ଯେ ତରୁଣୀ ସଙ୍ଗିନୀଙ୍କୁ ପ୍ରତାରିତ କରିଛି, ତାର ଏକ ଲମ୍ବା ତାଲିକା ସେ ଆଜି ତିଆରି କରିଛି ।

ପୃଥିବୀକୁ ଆସିବାର ପଞ୍ଚତିରିଶି ବର୍ଷ ପରେ ବିଜୟ ଏବେ ନିବିଡ଼ ଭାବରେ ଅନୁଭବ କରୁଛି ଯେ, ଜୀବନରେ ଜଣେ ନାରୀକୁ ବିବାହ କରିବାକୁହିଁ ପଡ଼ିବ ।

ବହୁ ଆଡ୍‌ଭେନଚରର ସଂକୁଳ ଅନେକ ପ୍ରକାର ଦୁଃସାହସିକ ଜୀବନ ଯାତ୍ରା ପଥକୁ ବରଣ କରି ସାରିବା ପରେ ସେ ଆଜିକାଲି ଜଣେ ପ୍ରତିଷ୍ଠାବାନ ବିଶିଷ୍ଟ ନାଗରିକ ହୋଇ ଦେଶର କିଛି ବିଶେଷ କାର୍ଯ୍ୟ କରିବାକୁ ଚେଷ୍ଟା କରୁଛି । ଏହା କରିବାକୁ ହେଲେ ତାକୁ ନିର୍ଦ୍ଦିଷ୍ଟ କେତୋଟି କାର୍ଯ୍ୟ ଆଗେ କରିବାକୁ ହେବ ବୋଲି ସେ ଭାବୁଛି ।

ଯଥା—ବାଟ ଘାଟରେ ଯାହାକୁ ପାଇ ତାହାକୁ ମୂହୂର୍ତ୍ତକର ପ୍ରେମିକା ଭାବରେ ଭାବଗତ ଅନ୍ତଃପୁର କରିବାକୁ ଚେଷ୍ଟା ନ କରି ଜଣେ କାହାକୁ ଏକାନ୍ତ ଆନ୍ତରିକ ଭାବେ, ନିଷ୍ଠାର ସହ ଭଲ ପାଇବାକୁ ହେବ ।

କିନ୍ତୁ କାହାକୁ ? ଅତୀତରେ ଯେଉଁ କିଶୋରୀ କିଶୋରୀମାନଙ୍କ ଦୁର୍ବଳ ମୂହୂର୍ତ୍ତର ସୁଯୋଗ ନେଇ ସେମାନଙ୍କୁ ସେ ପ୍ରତାରିତ କରିଛି, ତାଙ୍କର ଭିତରୁହିଁ ଜଣକୁ ବାଛିବା ପାଇଁ ତାର ବଡ଼ ଇଚ୍ଛା । କିନ୍ତୁ ତାଲିକାଟିକୁ ବାରମ୍ବାର ସେ ଅନୁଧ୍ୟାନ କରି ସାରିବା ପରେ ଏବେ ନିହାତି ଏକ ବଡ଼ ଅସୁବିଧାର ସମ୍ମୁଖୀନ ହୋଇଛି । କଥା ହେଉଛି, ସେମାନେ ସମସ୍ତେ ଊଣା ଅଧିକେ ସୁନ୍ଦରୀ ଓ ସୁରସିକା । ତାଙ୍କର ଯେଉଁ ରୂପ ଓ ଯୌବନ ଛଳ ଛଳ ଉଜ୍ଜ୍ୱଳ ଚର୍ମ-ଆଡ଼ମ୍ବର ସେ ଦିନ ତାର ପରମ ଆକର୍ଷଣର ବସ୍ତୁ ଥିଲା, ଆଜି ତାହାହିଁ ତାର ବିବାହ-ଭାବନାରେ ପ୍ରତିବନ୍ଧକ ହୋଇ ଠିଆ ହେଉଛି ।

କିଣ ଏ କଥା ?

ଆଜି ତାର ଏକାନ୍ତ ଇଚ୍ଛା, ସେ ବିବାହ କରିବ ଏପରି ଏକ ରମଣୀକୁ, ଯାହାକୁ କି ଅନ୍ୟ ସମସ୍ତ ପୁରୁଷ ବ୍ୟକ୍ତି କୁତ୍ସିତା ବୋଲି ବର୍ଜନ କରିଥିବେ । ଅଥଚ ମା ହେବାର ସାମର୍ଥ୍ୟ ତାର ଅକ୍ଷୁନ୍ନ ରହିଥିବ । ଗୃହିଣୀ ହେବାର ସାଧାରଣ ଯୋଗ୍ୟତା ଥିବ ।

ତାଲିକାଟିକୁ ବାରମ୍ବାର ପଢ଼ିସାରି ସେ ସମସ୍ତଙ୍କ ଚେହେରା-ଗୁଡ଼ିକୁ ମନେ ମନେ ପୁଣି ଥରେ ଦେଖିନେଲା । ନା ହେବ ନାହିଁ ! ଚିନ୍ତାର ଚୋଟି ଚିପି ମନକୁ ବାଆଁରେଇ ନେଲା ଅନ୍ୟ ଦିଗରେ ।

ସେଦିନ ପୂର୍ଣ୍ଣିମା ରଜନୀର ଆକାଶଟି ଘୋର ମେଘାଚ୍ଛନ୍ନ ଥିଲା । ବିଜୟଚନ୍ଦ୍ର ସ୍ଥାନୀୟ ଏକ ସାଂସ୍କୃତିକ ସମିତିର ନୂତନ ନାଟକ

ଉଦ୍‌ଘାଟନ କଲା ପରେ ବକ୍ତୃତା ଦେବାକୁ ଯାଇ ଦେଖିଲା, ନାଟକ ଦେଖିବା ପାଇଁ ଅଗଣିତ ଜନ ସମାଗମର ଅଗ୍ରଭାଗରେ ବହୁ ତରୁଣୀ ଓ ଗୃହିଣୀ ଆସନ ମଣ୍ଡନ କରିଛନ୍ତି । କେମିତି କେମିତି ଲୁଚେଇ ଲୁଚେଇ ଦେଲା ନେଲା ଆପଣାର ଆପଣାର ଆଖିରେ ଅନେଇଛନ୍ତି ।

ବକ୍ତୃତା ଚାଲିଥାଏ । ଆଖି ଦୁଇଟି ତାର ଚରି ବୁଲୁଥାଏ ଏହି ରସିକା ଦର୍ଶିକା-ରମଣୀମାନଙ୍କ ମୁଖମଣ୍ଡଳ ଦେଇ, ସେମାନଙ୍କ ଜୀବନ-ଇତିହାସ ଭିତରେ । ସେ ବୋଧ କରୁଥାଏ ଯେ ଏତେ ନାଇଲନ ଶାଢ଼ୀର ଝଲମଲ୍, ଏତେ ସୁବାସିତ ପ୍ରସାଧାନ ସାମଗ୍ରୀର ରୁଚିକର ବିନ୍ୟାସ, ଏତେ ସଜାମଜା ରୂପ ଛବିର ବିପୁଳ ପ୍ରଚେଷ୍ଟା ଭିତରେ ମଧ୍ୟ ଏମାନେ ଯେପରି ହସିବାକୁ ଯତ୍ନ କରୁଛନ୍ତି, ସେପରି ନୁହଁନ୍ତି । ଏମାନଙ୍କ ପ୍ରାଣର ପାଇଖାନା ଟାଙ୍କି ଉପରଟା ଫଟା । ସେଇବାଟେ ପୂତି ନର୍କର ବିକଟ ଦୁର୍ଗନ୍ଧ ଅହରହ ନିର୍ଗତ ହୋଇ ଜୀବନ ମନ୍ଦିରଗୁଡ଼ିକୁ ଅପବିତ୍ର କରି ଦେଉଛି । ଏପରି ସୁନ୍ଦରୀ ନାରୀଙ୍କୁ ବିବାହ ନ କରିବା ପାଇଁ ତାର ଯେଉଁ ସିଦ୍ଧାନ୍ତ, ତାହା ଆଜି ପୁନର୍ବାର ଦୃଢ଼ତର ହୋଇଗଲା ।

ନାଟକର ଶେଷ ଦୃଶ୍ୟ —

ପଟ ଉତ୍ତୋଳନ ପରେ ଦେଖାଗଲା, ଗୋଟାଏ କୃଷକ ଘର ପରିବାର ଭିତରେ ଅଶାନ୍ତିର ଝଡ଼ ସୃଷ୍ଟି ହୋଇଛି । କୁତ୍ସିତା କନ୍ୟାର ବିବାହ ପାଇଁ ତାଙ୍କୁ ଆଜି ସବୁ ସମ୍ପତ୍ତି ଉଜାଡ଼ି ଦେବାକୁ ପଡ଼ୁଛି, ସମ୍ବନ୍ଧୀ-ଦମ୍ପତି ହସ୍ତରେ । କୃଷକ ଓ ତାର ପତ୍ନୀ କାନ୍ଦ କାନ୍ଦ ଲୋଟି ଯାଉଛନ୍ତି । ବଡ଼ କରୁଣ ବାତାବରଣ ।

କିଛି ସମୟ ପରେ କୃଷକ କନ୍ୟା ଏ କଥା ଜାଣିପାରିଛି ଓ ପିତା ମାତାଙ୍କ ନିକଟରେ ଉପସ୍ଥିତ ହୋଇ ଦୃଢ଼ କଣ୍ଠରେ କହୁଛି —

ମୁଁ ବିବାହ କରିବାକୁ ଚାହେଁ ନାହିଁ । ତମେ ଯଦି ବାଧ୍ୟ କର ମୁଁ ତମର ସମସ୍ତ ମମତାକୁ ଛିନ୍ନ କରି ଯୁଆଡ଼େ ଇଚ୍ଛା ଚାଲିଯିବି । ସେ ଯୁକ୍ତି କରିଛି, ତା'ର ପ୍ରସ୍ତାବିତ ବର ତାକୁ ପ୍ରେମ କରେ ନାହିଁ, ପ୍ରେମ କରେ ପ୍ରତିଶ୍ରୁତ ଯୌତୁକ-ସମ୍ପତ୍ତିକୁ । ଯିଏ ନାରୀକୁ ଭଲ ପାଇ ଜାଣେ ନାହିଁ, ତାର କି ଅଧିକାର ଅଛି ଜଣେ ନାରୀକୁ ବିବାହ କରିବା ପାଇଁ ?

'ବାଃ' ବିଜୟଚନ୍ଦ୍ର ଉଚ୍ଛ୍ୱସିତ ହୋଇ ତାଳି ମାରୁ ମାରୁ ମନେ ମନେ ସଂକଳ୍ପ କଲା, ସେ ଠିକ୍ ଏହିପରି ଝିଅଟିକୁ ଆବିଷ୍କାର କରିବ ।

ଅନେକ ଦିନ ବିତିଗଲା । କାର୍ତ୍ତିକ ମାସର କଦଳୀ ପାଗ ଓଡ଼ିଶାର ଉପକୂଳ ଅଞ୍ଚଳରେ ବେଳକୁ ବେଳ ଗୁରୁତର ହୋଇ ଉଠିଲା । ବାତ୍ୟା ଓ ଝଡ଼ ବିପ୍ରାତରେ ସହସ୍ର ସହସ୍ର ପରିବାର ଶୋଚନୀୟ ଭାବେ ବିପନ୍ନ ହୋଇ ପଡ଼ିଲେ । ସାରା ଦେଶରେ ଆତଙ୍କ ଖେଳିଗଲା ।

ରିଲିଫ୍ କମିଟିର ଚେୟାରମେନ୍ ବିଜୟଚନ୍ଦ୍ର ଓଡ଼ିଶାର ଏହି ଘୋର ଦୁର୍ଦ୍ଦିନ ସହ ମୁକାବିଲା କରିବା ସକାଶେ ଅଣ୍ଟା ଭିଡ଼ିଛି । ରାଜ୍ୟ ବାହାରୁ ବହୁ ସାହାଯ୍ୟ ସଂଗ୍ରହ କରି ବର୍ତ୍ତମାନ ବିତରଣ କାର୍ଯ୍ୟ ଆରମ୍ଭ କରି ଦେଇଛି ଗ୍ରାମେ ଗ୍ରାମେ ।

ବତାସ-ବିଧ୍ୱସ୍ତ ଏକ କ୍ଷୁଦ୍ର ପଲ୍ଲୀ । ଜନଆ ଦେଖା ଦେଲା । ବିଜୟଚନ୍ଦ ସଦଳବଳେ ପହଞ୍ଚିଲା ଗାଁ ମୁଣ୍ଡରେ । ସାଙ୍ଗରେ ଅଛି ପ୍ରଚୁର ସାହାଯ୍ୟ ପଦାର୍ଥ, ବୋଝେଇ ଟ୍ରକ ଓ ଦଶ ଜଣ ସହକର୍ମୀ ।

ବାତ୍ୟା ବିଧ୍ୱସ୍ତ ଗାଁ ଆଡ଼କୁ ଅନାଇ ହେଉନାହିଁ । ବହୁ ଘର ମାଟିରେ ମିଶି ଯାଇଛି । ବାଉଁଶ ତାଟି, ତାଳ ବାଡ଼ ଘେର ଭିତରେ

ପରିବାରଗୁଡ଼ିକ କାମ ଚଳାଉଛନ୍ତି । ଜୀବନ ଓ ବସନ୍ତ ଉଜୁଡ଼ି ପଡ଼ୁଛି ।

ପାଞ୍ଚ ମିନିଟ ଭିତରେ ଗାଁ ଯାକର ଆବାଳବୃଦ୍ଧବନିତା ଘେରିଗଲେ । ଅସହାୟ ମଣିଷର କରୁଣ ହାହାକାର ବିଜୟଚନ୍ଦ୍ରର ଦୃଢ଼ ବ୍ୟକ୍ତିତ୍ୱକୁ ଦୋହଲାଇ ଦେଲା । ସେ ନିର୍ନିମେଷ ନୟନରେ ଚାହିଁ ରହିଲା ଉପଦ୍ରୁତ ଜନତା ଆଡ଼କୁ ।

'ବିଅ ଖାଇବାକୁ ଆଗ କିଛି ବାବୁ ।'

ବୁଢ଼ାଟିଏ ବିଳାପ ମିଶ୍ରିତ ସ୍ୱରରେ ରହି ରହି କହିଲା ।

'ଆପଣମାନେ ସ୍ଥିର ହୋଇ ବସନ୍ତୁ । ଆମେ ଆପଣମାନଙ୍କ ପାଇଁ କଣ କରି ପାରିବୁ କହିଦେବି । ତା ପରେ କିପରି କଣ କରାଯାଇ ପାରିବ ସ୍ଥିର କରିବା ।' ବିଜୟଚନ୍ଦ୍ର ହାତ ହଲାଇଲା ।

ନିମିଷକ ପାଇଁ ଜନତା ସ୍ଥିର ହୋଇଗଲେ ।

ହଠାତ୍ ସେହି ଜନ ସମାଗମ ଭିତରେ ଠିଆ ହୋଇ ପଡ଼ିଲା ଜଣେ ବିକଳାଙ୍ଗ ମହିଳା । ବୟସ ତିରିଶିରୁ ବେଶି ହେବ ନାହିଁ । ଗୋଟିଏ ଆଖି ବୋଧହୁଏ ଶିରବନ ପାଇଁ ମୁଦ୍ରିତ ହୋଇ ଯାଇଛି । ମନେ ହେଉଛି ସଯତ୍ନ ବର୍ଦ୍ଧିତ କୁସୁମ ବଲ୍ଲରୀଟିଏ ସଂପ୍ରବତ୍ତ ବତାସରେ ବିଧ୍ୱସ୍ତ ହୋଇ ଯାଇଛି । ସେ ସର୍ବସ୍ୱ ହରାଇଛି । ବୁଢ଼ୀ ମାଁ, ଭେଣ୍ଡା ଭାଇ, ଗୁହାଳ ଭରି ଗାଈ ଗୋରୁ, ସମସ୍ତେ ଶିରବନ ପାଇଁ କାହ୍ନୁ ତଳେ ପୋତି ହୋଇ ଯାଇଛନ୍ତି । ସେ ନିଜେ ଆଖି ହରେଇଛି, ଗୋଟିଏ ପାଦର ଅଧେ, ଗୋଟିଏ ହାତର ଦୁଇଟି ଆଙ୍ଗୁଠି ଓ ଆର ହାତର ଅଧେ ସେ ହରାଇ ଦେଇଛି ।

ନାଁ ତା'ର ଦମ୍ପିମଣ୍ଟି ।

ଦମ୍ପିମଣ୍ଟି ଠିଆହେବା ମାତ୍ରେ ସମଗ୍ର ଜନତା ତା ଆଡ଼କୁ ଅନେଇ ରହିଲେ ଉତ୍ସୁକ ନେତ୍ରରେ । ପ୍ରଣ୍ଡ ମାଷ୍ଟ୍ରେ କହିଲେ, ଆହା ବର୍ଷେ ଦିନ ପଚାଶିଟା ଘରେ କେଡ଼େ ସୁନ୍ଦର ଦିଶୁ ନ ଥିଲା! ଦେଖିଲା ଲୋକର ଆଖି ଲାଖି ରହୁଥିଲା । ଗ୍ରାମସେବକ କହୁଥିଲା— ବି. ଡି. ଓ. ଙ୍କର ସାନ ଭାଇ ବିଲାତରୁ ଫେରିଲେ ୟାକୁ ବାହା କରିବ, କିନ୍ତୁ ହାୟ, ଆଜି କି ନଦର୍ଯ୍ୟ ହୋଇ ପଡ଼ିଛି ତା ଚେହେରା ! କିଏ ଆଉ ବିଭା ହେବ ୟାକୁ ?

ଦମ୍ପିମଣ୍ଟି ଗୁରୁଗମ୍ଭୀର ସ୍ୱର ଉତ୍ତୋଳନ କରି କହିଲା— "କଣ ତମେ ସାହାଯ୍ୟ କରିବ? ଏ ଦେଶରେ ମଣିଷ ପାଇଁ ଯେ ସାହାଯ୍ୟ କରିବ ସେପରି ତାପିତ ଅସହାୟଙ୍କୁ? ପଚାଶି ଦିନ ବିତିଗଲା, ଆହା କରିବାକୁ କାହାର ଦେଖା ନାହିଁ । ସରକାରତ ସରକାର, ଏ ଦେଶରେ ହୃଦୟ ଥିଲା ମଣିଷଟିଏ ବି ନାହାନ୍ତି ଯେ, ଏତେ ବିପଦଗ୍ରସ୍ତ ଗାଁଟାକୁ କେହି ପଚାରୁ ନାହାଁନ୍ତି? ଆଜି ତମେ ଆସିଛ, ଭଲ । କିନ୍ତୁ କ'ଣ ପାଇଁ? ·ସାହାଯ୍ୟ ଦେବାକୁ ନା ସାହାଯ୍ୟ ଦେବା ନାମରେ ସାହାଯ୍ୟ ନେବାକୁ? ଭୋଟବେଳେ କହିବାକୁ ସୁବିଧା ହେବ ପରା—ଆମେ ଅମୁକେଇ ଗାଁକୁ ଯାଇ ଦୁଃଖ ଦେଖିଥିଲୁ ।

ପଚାଶି ଦିନ ପରେ କି ସାହାଯ୍ୟ କରିବ? ଆମେ ଯିଏ ବଞ୍ଚିବାର କଥା ବଞ୍ଚିଛୁ ଓ ବଞ୍ଚିବୁ । କିନ୍ତୁ ସେମାନେ ଆଉ କ'ଣ ଫେରିବେ ଯେଉଁମାନେ ସାମାନ୍ୟ ଚିକିତ୍ସା ନ ପାଇ କାନ୍ଦି କାନ୍ଦି ଗଡ଼ି ଗଡ଼ି ମରିଗଲେ? ଆଉ ସେ ସବୁ କଣ ଫେରିବ, ଯତ୍ନ ନ ପାଇ ଯେଉଁମାନଙ୍କର ଆଖି, ହାତ, ଗୋଡ଼ ନଷ୍ଟ ହୋଇଗଲା ଚିରକାଳ ପାଇଁ?

ତମେ ପାରିବ ସାହାଯ୍ୟ କରି ? ଦେଖ ମୋତେ, ଏଇ ମାର୍ଗଶିର ମାସରେ ବଳିତ ଫେରନ୍ତା ବର ସାଙ୍ଗରେ ମୋର ବାହାଘର ହୋଇଥାନ୍ତା । କିନ୍ତୁ ଦେଖ ... ଆଖି ନାହିଁ, ହାତ ନାହିଁ, ଗୋଡ଼ ନାହିଁ । ମୋତେ ଆଜି ସାହାଯ୍ୟ କରି ପାରିବ କିଏ ?

କହିଁ କହିଁ ହୋଇ କାନ୍ଦି ଉଠିଲା ଦମ୍ପୃମଣି ।

ବିଜୟଚନ୍ଦ୍ର ଆଉ ସହି ପାରିଲା ନାହିଁ । ଧାଇଁ ଯାଇ ତାକୁ ଜାବୁଡ଼ି ଧରି କହିଲା, "ଅଛି । ଏ ଦେଶରେ ମଣିଷ ଅଛି, ଅଲବତ୍ ଅଛି । ମାର୍ଗଶିର ମାସରେ ଅଲବତ୍ ତମର ବାହାଘର ହେବ ବିଳାତ ଫେରନ୍ତା ବର ସାଙ୍ଗରେ ।"

ଜନତା ବୁଡ଼ି ରହିଥିଲା ନିଘଞ୍ଚ ଘୋର ନିସ୍ତବ୍ଧତା ମଧ୍ୟରେ ।



ଜୟପୁର ପ୍ରକାଶ ପ୍ରେସ୍‌ରେ ଶ୍ରୀ ରାମନାଥ ପଣ୍ଡାଙ୍କ ଦ୍ୱାରା ମୁଦ୍ରିତ ।